ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ







**୬୪ ବର୍ଷ, ଦ୍ୱିତୀୟ ସଂଖ୍ୟା**
**ସେପ୍‌ଟେମ୍ବର, ୨୦୧୪**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**

*ଯୋଗାଯୋଗ*
**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* : ୯୮୬୧୦୬୪୮୯୧,
୨୪୨୨୫୯୭, ୨୪୨୦୦୭୫
email :
nandaanasuya@hotmail.com
www:odisha publication.com

ଅନ୍ୟାନ୍ୟ ବିଭାଗର ଲେଖକ--
ଇଂ ପ୍ରଭାତ କୁମାର ନନ୍ଦ

**ଗଳ୍ପ ଓ ଜୀବନୀ**



**କବିତା**



**ଭ୍ରମଣ କାହାଣୀ**



**ଜ୍ଞାନ-ବିଜ୍ଞାନ**



**ମନୋରଞ୍ଜନ**



## ଆମ ଚିଠି ମୁଣିରୁ

**ଶାନ୍ତିନଗର, ଉମରକୋଟ, ନବରଙ୍ଗପୁରରୁ ଡ.ପ୍ରଦୀପ କୁମାର ମିଶ୍ର**-- ଏ ମାସର 'ସଂସାର'ରେ ଧନ, ଯଶ, ଜ୍ଞାନ; ପରୀରାଇଜର କାହାଣୀ, କାଳିଜାଇ ବଡ଼ ପ୍ରତ୍ୟକ୍ଷ ଦେବତା, ଭାବି ଦେଖନ୍ତୁ ଖୁବ୍ ସୁନ୍ଦର ହେଇଛି । ପ୍ରଚ୍ଛଦ ମଧ୍ୟ ଚମତ୍କାର । ଲେଖକମାନଙ୍କୁ ଧନ୍ୟବାଦ ।

**ବରଗଡ଼, ବ୍ରିଟ୍‌କଲୋନୀ, ଭୁବନେଶ୍ୱରରୁ ପବିତ୍ର କବି**-- ଏ ମାସର ଭାବି ଦେଖନ୍ତୁ ଆଲୋଚନାଟି ଚମତ୍କାର ହୋଇଛି । ସଂସାରପ୍ରେମୀମାନଙ୍କୁ ଏହିଭଳି ପ୍ରେରଣା ଦେଉଥାନ୍ତୁ । ଏ ସଂଖ୍ୟାରେ ପ୍ରକାଶିତ ବିଜ୍ଞାନ କଥା, ଗପ, କବିତା ସବୁ ଶିକ୍ଷଣୀୟ ହୋଇଛି । ପତ୍ରିକାଟିର ଉତ୍ତରୋତ୍ତର ଉନ୍ନତି କାମନା କରେ ।

## ** ଶୁଭେଚ୍ଛା **

ଆମର ପରିଚିତ ଲେଖକ ତଥା ବିଶିଷ୍ଟ ସାହିତ୍ୟିକ **ଶ୍ରୀ ନନ୍ଦକିଶୋର ସିଂହ**ଙ୍କୁ ଉତ୍କଳ ସାହିତ୍ୟ ସମାଜ ତରଫରୁ ତାଙ୍କର ସାହିତ୍ୟକୃତି ପାଇଁ 'ରାମକୃଷ୍ଣ ନନ୍ଦ ଶିଶୁ ସାହିତ୍ୟ ସମ୍ମାନ' ଏବଂ **ଶ୍ରୀ ଶ୍ରୀନିବାସ ଖଣ୍ଡାୟତ**ଙ୍କୁ ସାପ୍ତାହିକ ସମ୍ବାଦପତ୍ର 'ରାଷ୍ଟ୍ରଦୀପ' ତରଫରୁ ଓ **ଶ୍ରୀ ଯୁଗୋଳ କିଶୋର ଷଡ଼ଙ୍ଗୀ**ଙ୍କୁ ଶୈଶବ ପତ୍ରିକା ତରଫରୁ 'ଶୈଶବ ଶିଶୁ ସାହିତ୍ୟିକ ପୁରସ୍କାର' ପ୍ରଦାନ କରାହୋଇଛି ।

ଏମାନଙ୍କ ଗୌରବରେ 'ସଂସାର' ଗର୍ବିତ । ସେମାନଙ୍କର ସାହିତ୍ୟ ପ୍ରତି ଅମୂଲ୍ୟ ଅବଦାନ ସାହିତ୍ୟ ଜଗତକୁ ଉଦ୍‌ଭାସିତ କରୁ-- ଏତିକି କାମନା ସହ ସେମାନଙ୍କୁ ହାର୍ଦ୍ଦିକ ଶୁଭେଚ୍ଛା ଜ୍ଞାପନ କରୁଛୁ ।

**--ସଂସାର ପରିବାର**



## ଗୁରୁଦିବସ

ଗୁରୁସମାଜ ଓ ଛାତ୍ର-ସମାଜ-- ପରସ୍ପର ଭକ୍ତ ଏବଂ ଭଗବାନଙ୍କର ସମ୍ପର୍କ । ଛାତ୍ରର ଶୁଦ୍ଧତା ଓ ଗୁରୁଙ୍କର ମହାନତା ପରସ୍ପରର ସମ୍ମିଶ୍ରଣ ହିଁ ସମାଜରେ ଏକ ପବିତ୍ର ପରମ୍ପରାର ଉଦାହରଣ ସୃଷ୍ଟି କରେ । ଆଜି ଗୁରୁ ଛାତ୍ରର ସମ୍ପର୍କ ଦୋଦୁଲ୍ୟମାନ ।

ଆସନ୍ତୁ, ଏହି ପରିସ୍ଥିତିକୁ ସଜାଡ଼ିବା ଓ ଛାତ୍ର-ଗୁରୁ ମଧ୍ୟରେ ଏକ ମଜବୁତ, ସୁନ୍ଦର ସେତୁ ନିର୍ମାଣ କରିବା । ସେପ୍ଟେମ୍ବର ୫ ଗୁରୁଦିବସ ପାଇଁ ସମଗ୍ର ଛାତ୍ର ସମାଜ ଓ ଗୁରୁସମାଜକୁ ଅଭିନନ୍ଦନ ।

**-- ସଂସାର ପରିବାର**

## ସଂସାରର ନିୟମାବଳୀ

୧ । ଚିଠିପତ୍ର ବା ଟଙ୍କା ପଠାଇବାବେଳେ ଗ୍ରାହକ ନମ୍ବର ଓ ପିନ୍‌କୋର୍ଡ୍ ସହ ଠିକଣା ଲେଖିବାକୁ ବା ଫୋନ୍ ଦ୍ୱାରା ଜଣାଇବାକୁ ଅନୁରୋଧ । ଏହାଦ୍ୱାରା ସେମାନଙ୍କ ସହିତ ଯୋଗାଯୋଗ କରିବା ସହଜ ହେବ ।

୨ । ବିଜ୍ଞାପନ ଓ ଏଜେନ୍‌ସି ପାଇଁ ପରିଚାଳକଙ୍କୁ ଯୋଗାଯୋଗ କରନ୍ତୁ ।

୩ । ୧୦ଖଣ୍ଡରୁ କମ୍ ପତ୍ରିକା ପାଇଁ ଏଜେନ୍‌ସି ଦିଆଯାଏ ନାହିଁ ।

୪ । ଏଜେଣ୍ଟମାନଙ୍କ 'ସଂସାର' ବାବାଦ ଦେୟ ୨୦ ତାରିଖ ପୂର୍ବରୁ ଆମ ପାଖରେ ପହଞ୍ଚିବା ଆବଶ୍ୟକ, ନଚେତ୍ ପତ୍ରିକା ପଠାଇବା ସମ୍ଭବ ହେବ ନାହିଁ ।

**ଏ ମାସର ପ୍ରଚ୍ଛଦ-** ଶ୍ରୀଶକ୍ତି ସୁପରଫାଷ୍ଟ ଏକ୍ସପ୍ରେସ୍ ବିଷୟରୁ ଚିତ୍ର ପ୍ରଦତ୍ତ ।

# କେଉଁଟି ଭଲ ? ଦୟା ନା ଦ୍ୱେଷ

ନିର୍ମଳା କୁମାରୀ ମହାପାତ୍ର

କର୍ଣ୍ଣାଟକର ଏକ ଦେଶୀୟ ରାଜ୍ୟର ନାମ କିଟୋର। ସେଠାକାର ଶାସକ ଥରେ ଜଣେ ଅପରାଧୀକୁ ଆଜୀବନ କାରାଦଣ୍ଡ ଆଦେଶ କରିଥିଲେ। ସେ ଲୋକର ନାମ ଥିଲା ପାଣ୍ଡୁ ସେଠୀ । ଲୋକଟା ଅମାର୍ଜିତ। ତାକୁ ପୁଣି ସାରା ଜୀବନ ପାଇଁ କାରାବାସ ଆଦେଶ। ସେଥିରୁ ବର୍ତ୍ତିବାର ଆଶା ନାହିଁ। ବୁଡ଼ିଯାଉଥିବା ଲୋକ ପାଖରେ ଘୋର ବରଷା ଯାହା, ସୂର୍ଯ୍ୟୋଦୟ ବି ସେଇଆ। ଦ୍ୱିତୀୟରେ ଶିକ୍ଷାଦୀକ୍ଷାର ଅଭାବ। ଏଣୁ ତା'ର କଥିତ ଭାଷାରେ ମନଇଚ୍ଛା ଶାସକଙ୍କୁ ଗାଳିଦେଲା। ତାଙ୍କର ଶାସନ ପ୍ରତି ଅଭିଶାପ ବି ଢାଳିଲା। ପାଣ୍ଡୁ ସେଠୀର ଅପରାଧ ଗୁରୁତର ନଥିଲା। ତା'ର ପଡ଼ୋଶୀର ଗାଇ ତା' ବଗିଚାରେ ପଶି ଫସଲ ଖାଉଥିଲା। ତେଣୁ ସେ ଗାଇଟିକୁ ବାନ୍ଧି ରଖି ଦେଇଥିଲା। ଆଉ ଦେଉ ନଥିଲା। ପଡ଼ୋଶୀ ଶାସକଙ୍କ ପାଖରେ ଆପତ୍ତି କରିବାରୁ ଶାସକ କ୍ରୋଧରେ ଏପରି ଆଦେଶ ଦେଇଥିଲେ।

ଶାସକଜଣକ ଥିଲେ ବେଶ ପାଠୁଆ ଓ ଶୃଙ୍ଖଳିତ; ମାତ୍ର ଖୁବ୍ କ୍ରୋଧୀ। ସେ ପାଣ୍ଡୁ ସେଠୀର ଗାଉଁଲି ଭାଷାକୁ ବୁଝି ପାରୁ ନ ଥିଲେ। ସେ ତାଙ୍କର ଜଣେ ସଚିବଙ୍କୁ ଅପରାଧୀ କହୁଥିବା କଥାର ଅର୍ଥ ପଚାରିଲେ। ସଚିବଙ୍କ ନାମ ଥିଲା ରାମାରାଧ୍ୟ।

ସଚିବ ରାମାରାଧ୍ୟ ଥିଲେ ଜଣେ ଉତ୍ତମ ପ୍ରକୃତିର ଲୋକ। ବେଶ ଦୟାଳୁ। ସେ ଭାବିଲେ ଅପରାଧୀଟା ଦଣ୍ଡାଦେଶ ଯୋଗୁ ଗାଳି ଦେଉଛି। ଯଦି ସେଠୀ କହିଥିବା କଥାର ଠିକ୍ ଅର୍ଥ କୁହାଯାଏ, ତେବେ ପୁନରାୟ ଦଣ୍ଡ ସିଏ ପାଇବ କୁତ୍ସିତ ଭାଷା ପ୍ରୟୋଗ ଯୋଗୁ। ଲୋକଟା ଦଣ୍ଡ ପାଇ ପାଇ ଦଦରା ହୋଇଯିବ। ଏମିତି ଚିନ୍ତା କରି ରାମାରାଧ୍ୟ ଶାସକଙ୍କୁ କହିଲେ, "ମହାଭାଗ ! ସିଏ କହୁଛି, ଯିଏ କ୍ରୋଧକୁ ଦମନ କରେ ଓ ଦୋଷୀକୁ କ୍ଷମା କରେ, ଭଗବାନ ତାକୁ ଆଶିଷ ପ୍ରଦାନ କରନ୍ତି।"

ଶାସକ ଏହା ଶୁଣି ଖୁସି ହୋଇଗଲେ। ଅପରାଧୀ ପାଣ୍ଡୁ ସେଠୀ ପ୍ରତି ଦୟା ବହି ତାକୁ ଦଣ୍ଡରୁ ମୁକ୍ତ କଲେ, ଫଳରେ ଅପରାଧୀ ଛାଡ଼ ପାଇ ଚାଲିଗଲା।

ଏସବୁ ଘଟଣା ଘଟୁଥିବାବେଳେ ଆଉ ଜଣେ ସଚିବ ସେଠାରେ ଉପସ୍ଥିତ ଥିଲେ। ତାଙ୍କର ନାମ ପୁଣ୍ୟେୟ। ସେ ସମସ୍ତ କଥା ଅନୁଧ୍ୟାନ କରୁଥିଲେ ବିଶେଷ ଉଦ୍ଦେଶ୍ୟ ନେଇ। ବସ୍ତୁତଃ ରାମାରାଧ୍ୟଙ୍କୁ ସେ ଆଦୌ ସହି ପାରୁ ନ ଥିଲେ। ତାଙ୍କ ନୀତିକୁ ପସନ୍ଦ କରୁ ନ ଥିଲେ। ଅପରାଧୀ ସେଠୀକୁ ଦଣ୍ଡମୁକ୍ତ କରିବା କଥାଟା ତାଙ୍କୁ ଅପସନ୍ଦ ଲାଗିଲା। ସେ ଚାହୁଁଥିଲେ ମଉକା ମିଳିଲେ



ଶାସକଙ୍କ ସାମନାରେ ରାମାରାଧ୍ୟଙ୍କୁ ଅପମାନ ଦେବେ। ଏଣୁ ଏଇ ଘଟଣାରେ ସେ ନାକ ଭର୍ତ୍ତି କଲେ। ଅବା ତାଙ୍କୁ ପଚରା ନ ଗଲେ ମଧ୍ୟ ସେ ଶାସକଙ୍କୁ କହିଲେ-- "ମହାଭାଗ, ମୁଁ ସେହି ଅପରାଧୀ କହୁଥିବା କଥାକୁ ବୁଝିପାରୁଥିଲି। ମୋତେ ସେହି ଭାଷା ଜଣା। ସେ ପରା ହଜୁରଙ୍କୁ ଗାଳି ଦେଉଥିଲା। ଆପଣଙ୍କ ଉପରେ ଅଭିଶାପ ଡାଳୁଥିଲା। ରାମାରାଧ୍ୟବାବୁ କପଟୀ, ଅସାଧୁ ମଧ୍ୟ। ତାଙ୍କର କପଟାଚାର ପାଇଁ ସେ ଦଣ୍ଡିତ ହେବା ଉଚିତ। ଦୋଷୀ କାହିଁକି ଛାଡ଼ ପାଇବ ? ଦୋଷ କଲେ ଦଣ୍ଡ ଅଛି।"

ଶାସକ ଉଭୟ ସଚିବଙ୍କ କଥା ଶୁଣି ସାରିଛନ୍ତି। ମନେ ମନେ ଉଭୟଙ୍କର କଥାକୁ ତଉଲିଲେ। କେଉଁଟା ଭଲ ? ରାମାରାଧ୍ୟର କପଟାଚାର ନା ପୁଣ୍ୟେୟର ସତ୍ୟ ବଚନ ?

ରାମାରାଧ୍ୟ ମିଛ କହିଥାଇ ପାରନ୍ତି, ମାତ୍ର ଜଣଙ୍କୁ ବଞ୍ଚାଇବା ପାଇଁ, ଦଣ୍ଡିତକୁ ଦୟା ଦେଖାଇବା ପାଇଁ। ମାତ୍ର ପୁଣ୍ୟେୟ ଯେଉଁ ସତକଥା କହୁଛନ୍ତି, ତାହା ବିଦ୍ୱେଷ ଯୋଗୁ। ଈର୍ଷାରେ ସେ ଜଳୁଛନ୍ତି। ରାମାରାଧ୍ୟର କପଟାଚାର ପୁଣ୍ୟେୟର ସତ୍ୟବଚନଠାରୁ ଢେର୍ ଭଲ।

ପାଠକେ ବିଚାର କରନ୍ତୁ ତ-- ଦୟା ନା ବିଦ୍ୱେଷ --କେଉଁଟି ଭଲ ?

*ସେକ୍ଟର-୨/୪୨୬, ନୀଳାଦ୍ରି ବିହାର, ଭୁବନେଶ୍ୱର-୨୧*

## ନୀତି ମୁକ୍ତାମାଳା

- ସ୍ଥାନ ମନୁଷ୍ୟର ଗୌରବ ବଢ଼ାଏ ନାହିଁ, ମନୁଷ୍ୟ ହିଁ ସ୍ଥାନର ଗୌରବ ବଢ଼ାଏ। (ଆଜେସିଲସ)
- ନିଜର ଅଜ୍ଞତାକୁ ଯଦି ସାମାନ୍ୟ ବୋଲି ବିଚାରିଲ, ତେବେ ତୁମର ବିପଦ ବଢ଼ିଲା। (ରବର୍ଟ)

# ରାଜା ଓ ପ୍ରଜା

### କାଳିକିଙ୍କର

ଜଣେ ରାଜା ଅତ୍ୟନ୍ତ ପରାକ୍ରମୀ ଓ ଧନଶାଳୀ ଥିଲେ। ତାଙ୍କର ବିଶାଳ ରାଜ୍ୟ ଥିଲା। ସୁନା, ରୁପା, ମୋତି, ମାଣିକ୍ୟ, ଟଙ୍କା-ପଇସା ବହୁତ ଥିଲା। ଏମିତି ଥିଲା ଯେ ଯେମିତି ଯେତେ ନେଲେ ସରିବ ନାହିଁ। ପ୍ରଜାମାନେ କିନ୍ତୁ ଥିଲେ ଗରିବ। ସେମାନଙ୍କୁ ଠିକ୍‌ରେ ଗଣ୍ଡେ ଖାଇବାକୁ କିମ୍ବା ଖଣ୍ଡେ ପିନ୍ଧିବାକୁ ନିଅଣ୍ଟ ପଡୁଥିଲା। ସେମାନେ ରାଜାଙ୍କ ଉପରେ ସନ୍ତୋଷ ନ ଥିଲେ। ତେବେ ରାଜାଙ୍କର କର୍ମଚାରୀମାନେ କଳେବଳେ କଉଶଳେ ପ୍ରଜାଙ୍କଠାରୁ ଧନଦୌଲତ ସଂଗ୍ରହ କରି କିଛି ନିଜେ ରଖୁଥିଲେ ଓ ବାକି ରାଜାଙ୍କୁ ଦେଉଥିଲେ। ରାଜାଙ୍କୁ କହୁଥିଲେ ଯେ ରାଜ୍ୟରେ ପ୍ରଜା ବହୁତ ସୁଖରେ ଦିନ ବିତାଉଛନ୍ତି ଓ ରାଜାଙ୍କ ଉପରେ ଖୁସି ଅଛନ୍ତି। ଏହା ଶୁଣି ରାଜା ଅତ୍ୟନ୍ତ ପ୍ରସନ୍ନ ହୁଅନ୍ତି।

ରାଜ୍ୟରେ ପ୍ରଜା ପ୍ରକୃତରେ ସୁଖ ଶାନ୍ତିରେ ଅଛନ୍ତି କି ନାହିଁ ଏକଥା ଜାଣିବା ପାଇଁ ସ୍ୱୟଂ ରାଜା କୌଣସି ଚେଷ୍ଟା କରନ୍ତି ନାହିଁ। ସେ ରାଜପ୍ରାସାଦ ଭିତରେ ଭୋଗ ବିଳାସରେ ସମୟ ଅତିବାହିତ କରନ୍ତି। କିଛିଦିନ ପରେ ରାଜାଙ୍କୁ ଖବର ମିଳିଲା ଯେ ରାଣୀ ଗର୍ଭବତୀ ଅଛନ୍ତି। ଏହା ରାଜାଙ୍କୁ ବହୁତ ଆନନ୍ଦିତ କଲା। ଯାହାହେଉ, ଏବେ ତାଙ୍କର ରାଜ୍ୟକୁ ଉତ୍ତରାଧିକାରୀ ମିଳିଯିବ, ଯିଏ ରାଜାଙ୍କ ପରେ ରାଜ୍ୟ ଚଳାଇବ।

କିଛିଦିନ ପରେ ରାଣୀ ଏକ ସୁନ୍ଦର ପୁତ୍ରସନ୍ତାନକୁ

ଜନ୍ମଦେଲେ । ତେବେ ଦୁର୍ଭାଗ୍ୟକୁ ପିଲାଟି କଥା କହି ପାରୁ ନ ଥିଲା । ଏହା ରାଜାଙ୍କୁ ବ୍ୟଥିତ କଲା । ରାଜ୍ୟର ପରବର୍ତ୍ତୀ ଶାସକ ଯେ ଜଣେ ମୂକ ହେବ, ଏହା ଅସମ୍ଭବ କଥା । ରାଜ୍ୟରେ ବିଦ୍ରୋହ ହୋଇଯିବ । ଏଣୁ ସେ ଈଶ୍ୱରଙ୍କୁ ପ୍ରାର୍ଥନା କଲେ ଯେ ତାଙ୍କର ଏହାପରେ ମଧ୍ୟ ପୁତ୍ରସନ୍ତାନ ପ୍ରାପ୍ତ ହେଉ ।

ତାହାହିଁ ହେଲା । ରାଣୀ ପରବର୍ଷ ଆଉ ଏକ ପୁତ୍ରସନ୍ତାନକୁ ଜନ୍ମଦେଲେ । ରାଜା ଅତ୍ୟନ୍ତ ଖୁସି ହେଲେ; କିନ୍ତୁ ରାଜାଙ୍କର ଖୁସି ବେଶି ସମୟ ରହିଲା ନାହିଁ । ରାଜକୁମାର ଦେଖି ପାରୁ ନ ଥିଲେ । ସେ ଥିଲେ ଅନ୍ଧ । ଆ ହା ହା, କେଡ଼େ ଦାରୁଣ ସମସ୍ୟା ? ଈଶ୍ୱର ଦ୍ୱିତୀୟ ସନ୍ତାନଟିକୁ ମଧ୍ୟ ଅନ୍ଧ ଭାବରେ ଦେଲେ ! ରାଜା ବ୍ୟଥିତ ହୋଇ ଈଶ୍ୱରଙ୍କୁ କହିଲେ, ‘‘ହେ ପ୍ରଭୁ, ତୁମେ ଏମିତି ନିର୍ଦ୍ଦୟ ହୁଅ ନାହିଁ । ଏମିତି ଅନ୍ଧ ଓ ମୂକ ପୁତ୍ର ମୋତେ ଦେଇ ଅନ୍ୟାୟ କରନାହିଁ ।’’

ପରବର୍ତ୍ତୀ ବର୍ଷ ରାଜାଙ୍କର ଆଉ ଏକ ପୁତ୍ର ଜନ୍ମ ହେଲା । ସେ କିନ୍ତୁ ପୂର୍ବ ଦୁଇ ସନ୍ତାନଙ୍କ ପରି ମୂକ କିମ୍ବା ଅନ୍ଧ ନ ଥିଲା । ରାଜା ଅତ୍ୟନ୍ତ ଖୁସି ହେଲେ । ରାଜବଂଶକୁ ଜଣେ ସୁଯୋଗ୍ୟ ଉତ୍ତରାଧିକାରୀ ମିଳିଗଲା ଭାବିଲେ । ତେବେ ରାଜାଙ୍କର ଖୁସି ମଧ୍ୟ ବେଶିଦିନ ରହିଲା ନାହିଁ । ସେ ଜାଣିବାକୁ ପାଇଲେ ଯେ ତୃତୀୟ ରାଜକୁମାର ଜଣକ ହେଲେ ପଙ୍ଗୁ । ତା’ର ଚାଲିବାର କ୍ଷମତା ନାହିଁ ।

ରାଜା ବିମର୍ଷ ହୋଇ କ୍ରୋଧ କରି କହିଲେ– ହେ ଈଶ୍ୱର ! ତୁମେ ଏ ସଂସାରରେ ମିଛ । ତୁମର ଅସ୍ତିତ୍ୱ ନାହିଁ । ତୁମେ ଭଣ୍ଡ । ଲୋକେ ତୁମକୁ ବୃଥାରେ ଈଶ୍ୱର ମାନନ୍ତି ।

ଏତିକିବେଳେ ଈଶ୍ୱର ସେଠାରେ ଉପସ୍ଥିତ ହୋଇ କହିଲେ, ‘‘ହେ ରାଜା, ତୁମେ ଅକାରଣରେ କ୍ରୋଧ କରୁଛ । ମୁଁ କର୍ମ ଅନୁସାରେ ଏ ପୃଥିବୀରେ ଫଳ ପ୍ରଦାନ କରେ । ତୁମେ ତୁମର କର୍ମ ଅନୁସାରେ ଫଳ ପାଇଛ । ଏଣୁ ବୃଥାଟାରେ ମୋତେ ଦୋଷ ଦେଉଛ କାହିଁକି ?’’

ଆଶ୍ଚର୍ଯ୍ୟ ହୋଇ ରାଜା ପଚାରିଲେ– ହେ ଈଶ୍ୱର, ମୁଁ ଏ ପୃଥିବୀରେ ସବୁଠାରୁ ବଳଶାଳୀ ଓ ଧନବାନ ରାଜା । ପ୍ରଜାମାନେ ମୋର ସମସ୍ତେ ସୁଖରେ ଅଛନ୍ତି । ପ୍ରଜାଙ୍କୁ ସୁଖରେ ରଖିବା ରାଜାର ଧର୍ମ । ମୁଁ ତାହା ପାଳନ କରିଛି । ଏଣୁ ମୋର କେଉଁ କର୍ମପାଇଁ ତୁମେ ମୋତେ ଏମିତି ଦଣ୍ଡ ଦେଇଛ ?

ଈଶ୍ୱର ହସିଲେ ଆଉ ପଚାରିଲେ, ‘‘ହେ ରାଜା ତୁମେ କଣ କେବେ ପ୍ରଜାଙ୍କର ପ୍ରକୃତ ଅବସ୍ଥା ଶୁଣିବା ପାଇଁ ଚେଷ୍ଟା କରିଛ ? କେବେ ପ୍ରଜାଙ୍କୁ ରାଜଦରବାରକୁ



ଡକାଇ ସେମାନଙ୍କ ଅବସ୍ଥା ବିଷୟରେ କହିବାର ସୁଯୋଗ ଦେଇଛ ?''

ରାଜା କହିଲେ– ନା ।

–ସେଥିପାଇଁ ତୁମର ପ୍ରଥମ ସନ୍ତାନ ମୂକ ଓ ବଧିର ହେଲା ।

ତା'ପରେ ଈଶ୍ୱର ପଚାରିଲେ– ତୁମେ କଣ କେବେ ପ୍ରଜାଙ୍କ ଦୁଃଖସୁଖ ଦେଖିବାର ଚେଷ୍ଟା କରିଛ ?

–ନା, ରାଜା ଉତ୍ତରଦେଲେ ।

–ବାସ୍ । ସେଥିପାଇଁ ତୁମର ଦ୍ୱିତୀୟ ସନ୍ତାନ ଅନ୍ଧ ହେଲା ।

ତା'ପରେ ଈଶ୍ୱର ପଚାରିଲେ– ତୁମେ କଣ ପ୍ରଜାଙ୍କର ସୁଖଦୁଃଖ ଜାଣିବା ପାଇଁ ସେମାନଙ୍କ ପାଖକୁ ନିଜେ ଯାଇଛ ?

ଉତ୍ତର ଥିଲା– ନା ।

ଈଶ୍ୱର କହିଲେ– ଏଣୁ ତୁମର ତୃତୀୟ ସନ୍ତାନ ପଙ୍ଗୁ ହେଲା ।

ରାଜା ଈଶ୍ୱରଙ୍କର ଉତ୍ତର ଶୁଣି ଆପଣା ଭୁଲ୍ ବୁଝିପାରିଲେ ଓ କାନ୍ଦିବାକୁ ଲାଗିଲେ । ସେ ଈଶ୍ୱରଙ୍କୁ କ୍ଷମାପ୍ରାର୍ଥନା କରି କହିଲେ, ''ହେ ଈଶ୍ୱର ! ମୋତେ କ୍ଷମା କର । ମୁଁ ଏବେ ମୋର ସମସ୍ତ ଭୁଲ୍‌ର ସଂଶୋଧନ କରିବି ।''

ଈଶ୍ୱର ଅନ୍ତର୍ଦ୍ଧାନ ହୋଇଗଲେ ଓ ରାଜା ସେହିଦିନଠୁଁ ନିଜେ ପ୍ରଜାଙ୍କ ସୁଖଦୁଃଖରେ ନିଜକୁ ହଜାଇ-ଦେଲେ । ଈଶ୍ୱରଙ୍କ କୃପାରୁ ରାଜା ଓ ରାଣୀଙ୍କୁ ପରବର୍ଷ ଜଣେ ସର୍ବଗୁଣସମ୍ପନ୍ନ ପୁତ୍ର ପ୍ରାପ୍ତି ହେଲା ।

*ସୌଭାଗିନୀ, ରଟିଲୋ, ରେଂଚ, ପୁରୀ-୭୫୨୧୧୪*




- ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୁର ଶାସ୍ତ୍ରୀ 'ଶାନ୍ତିର ମଣିଷ' (Man of Peace) ଭାବରେ ପରିଚିତ ।
- ତାକଲା ମାକାନ୍ (Takla Makan) ମରୁଭୂମି ଚୀନ୍‌ରେ ଅବସ୍ଥିତ ।
- ପୃଥିବୀର ସର୍ବାଧିକ କ୍ଷୟପ୍ରାପ୍ତ ଦେଶ (Most Eroded Country)ର ନାମ ହେଉଛି ମାଡ଼ାଗାସ୍କର୍ ।
- ରାଜସ୍ଥାନର ଲୋକସଭା ଆସନ ସଂଖ୍ୟା ହେଉଛି ୨୫ ।
- ପଞ୍ଜାବର ଜିଲ୍ଲା ସଂଖ୍ୟା ହେଉଛି ୨୨ ।
- ଭାରତ ପ୍ରଥମଥର ପାଇଁ ୧୯୨୮ ମସିହାରେ ଅଲମ୍ପିକ୍ ହକି ପ୍ରତିଯୋଗିତାରେ ଯୋଗଦାନ କରିଥିଲା ।
- IDAର ପୂର୍ଣ୍ଣରୂପ ହେଉଛି International Developement Agency.
- ଜଣେ ସାଧାରଣ ମଣିଷ ବର୍ଷକୁ ୧୪୬୦ରୁ ଅଧିକ ସ୍ୱପ୍ନ ଦେଖିଥାଏ ।
- ଜନ୍ମ ସମୟରେ ପ୍ରତ୍ୟେକ ବର୍ଣ୍ଣାନ୍ଧ (Colour Blind) ହୋଇଥାନ୍ତି ।
- ହାତୀମାନେ ଡେଇଁପାରନ୍ତି ନାହିଁ ।
- ଡଲ୍‌ଫିନ୍‌ମାନେ ଗୋଟିଏ ଆଖି ଖୋଲା ରଖି ଶୋଇଥା'ନ୍ତି ।

**--ଶ୍ରୀ ଜ୍ୟୋତି ରଂଜନ ବିଶ୍ୱାଳ,** *ପୋ-ଦୁର୍ଗାପୁର, ଭାୟା-ତାଳଚେର, ଜି-ଅନୁଗୋଳ*

# ଭାରତମାତାଙ୍କ ସ୍ନାନ ଉତ୍ସବ

ଶ୍ରୀ ଶ୍ୟାମସୁନ୍ଦର ବିଶ୍ୱାଳ

ମୌସୁମୀ ରଥରେ ବରଷା ବସି
ଆସିଅଛି ଆଣି ଲକ୍ଷେ କଳସୀ।
କଳସୀରେ ତୀର୍ଥରାଜର ନୀର
ସ୍ନାନ ସେବା ପାଇଁ ମନ ଅଧୀର।
ଭାରତମାତାଙ୍କ ସ୍ନାନ ଉତ୍ସବ
ସଂପାଦନେ ଲୋଡ଼ା ଯେତେ ଦରବ।
ବରଷା ସୁନ୍ଦରୀ ସବୁ ସଜାଇ
ଶୁଭ ଲଗନକୁ ରହିଛି ଚାହିଁ।
ମର୍ଦ୍ଦଳ ବଜାନ୍ତି ବଉଦମାଳ
ତୂରୀ ଧରିଛନ୍ତି ଉତ୍ତୁଙ୍ଗତାଳ।
ଗାଆନ୍ତି ସଂଗୀତ ଶୁକସାରିକା
ନାଚନ୍ତି ମୟୂର ହଲାଇ ଶିଖା।
ବଗମାଳେ ଶୋଭା ପାଏ ଗଗନ
ଉଚ୍ଛୁଳି ଉଠୁଛି ଚାତକ ମନ।
ଶୁଭ ସ୍ନାନ ବେଳା ଆସିଯାଆନ୍ତେ
ରୂପସୀ ବରଷା ଆପଣା ହାତେ।
ଜାଳିଲା ମଙ୍ଗଳଦୀପ ଯତନେ
ଚମକିଲା ଚତୁର୍ଦ୍ଦିଗ ତତ୍କ୍ଷଣେ।
ମନ୍ଦ୍ରନାଦେ ବାଦ୍ୟ ଉଠିଲା ବାଜି
ହର୍ଷ ଧ୍ୱନି କଲେ ପର୍ବତରାଜି।
ଭାରତମାତାଙ୍କୁ ପଞ୍ଚୋପଚାରେ
ପୂଜିଲା ବରଷା ଅତି ଶ୍ରଦ୍ଧାରେ।
ତା'ପରେ ତାଙ୍କର ଶ୍ରୀଅଙ୍ଗ ଦେଶେ
ଚନ୍ଦନାଦି ବୋଳିଦେଲା ବିଶେଷେ।
ଲକ୍ଷେ କଳସୀରୁ ଉଦକ ଢାଳି
ଦେଲା ସେ ମାତାଙ୍କ ତନୁ ପଖାଳି।
ହୁଳହୁଳି ଦେଇ ଦର୍ଦ୍ଦୁର ଦଳ
ମୁଖରିତ କଲେ ଅବନୀ ତଳ।
ପଶୁପକ୍ଷୀ-ତରୁଲତା-ମାନବ
ଆନନ୍ଦେ ଗାଇଲେ ମାତାଙ୍କ ସ୍ତବ।
ଅପ୍ସରାବୃନ୍ଦ ହରଷଭରେ
ପୁଷ୍ପ ବରଷିଲେ ମାତାଙ୍କ ପରେ।
ଅରପିଲେ ଏକ ସ୍ୱର୍ଗୀୟ ହାର
ଅପୂର୍ବ ଯା' ସପ୍ତ ବର୍ଣ୍ଣ ସମ୍ଭାର।
ଭାରତମାତାଙ୍କ ସ୍ନାନ ଉତ୍ସବ
ଭୁବନେ ଭରିବ ନବ ବିଭବ।

*ପ୍ରଧାନ ଶିକ୍ଷକ, ମାଧ୍ୟମିକ ପ୍ରଶିକ୍ଷଣ ବିଦ୍ୟାଳୟ, ବଲାଙ୍ଗୀର*

## ପହେଲି

୧। ଘର ଗୋଟିକରେ ବାର ବଖରା
ଦୁଇ ବୋହୂଙ୍କର କଡ଼ା ପହରା ।
ଥିରି ଥିରି ଚାଲେ ସାନ ବୋହୂଟି
ବଡ଼ ବୋହୂ କିନ୍ତୁ ଚାଲେ ଝପଟି ।

୨। ପୁଅ ସଳଖା, ବାପ ବଙ୍କା
ନାତିଟୋକାଟା ଅତି ତରକା।

୩। ଆକାଶରେ ଉଡୁଥାଏ ନାହିଁ ତା'ର ଡେଣା
ପିଲାଏ ଦେଖିଲେ ତାକୁ ହୋଇଯା'ନ୍ତି ବଣା ।

*(ଉତ୍ତର ୩୨ ପୃଷ୍ଠାରେ)*



# ମରି ବି ଅମର

ଡ. ରାମଚନ୍ଦ୍ର ଦେଓ

କୁନ୍‌ମୁନିର ଜନ୍ମଦିନ । ସକାଳୁ ସେ ତା' ସାଙ୍ଗମାନଙ୍କୁ ଡାକିଦେଇଥାଏ । ସନ୍ଧ୍ୟାରେ କେକ୍ କଟାଯିବ । ଏ ବର୍ଷ ବାପା ବଡ଼ କେକ୍‌ଟିଏ ମଧ୍ୟ ଆଣିଦେଇଛନ୍ତି । ଖୁସିରେ କୁନ୍‌ମୁନିର ପାଦ ତଳେ ଲାଗୁନି । ସେ ଖାଲି ଏଣେତେଣେ ଧାଇଁ ବୁଲୁଛି । ଥରେ ଥରେ ମା'ଙ୍କୁ ତାଙ୍କ କାମରେ ସାହାଯ୍ୟ ବି କରୁଛି ।

ତରକାରି ପାଇଁ ମା' ପରିବା କାଟୁଥିଲେ । ତେଣେ ଚୁଲିରେ ଖିରି ବସିଥିଲା । କୁନୁମୁନି ଦେଖିଲା ପନିକି ପାଖରେ ଅଧାକଟା ପରିବା ପଡ଼ିଛି । ଭାବିଲା-- ମା'ଙ୍କ କାମରେ ଟିକିଏ ସାହାଯ୍ୟ କରିଦେଲେ କ୍ଷତି ବା କ'ଣ ? ଅଧାକଟା ବାଇଗଣଟା ଉଠାଇ କାଟିବାକୁ ଗଲାବେଳେ ପନିକିରେ ତା' ହାତ ରଚ୍ କରି କଟିଗଲା । "ବୋଉଲୋ ମରିଗଲି !" ଚିତ୍କାର କରି ସେ କାନ୍ଦିଉଠିଲା । କୁନ୍‌ମୁନିର କାନ୍ଦଣା ଶୁଣି ରୋଷେଇଶାଳରୁ ମା' ଦଉଡ଼ିଆସିଲେ । ଦେଖିଲେ, କୁନ୍‌ମୁନିର ଡାହାଣହାତର ବିଶିଆଙ୍ଗୁଳି କଟିଯାଇ ରକ୍ତ ଝରୁଛି । ମା' ଘର ଭିତରକୁ ଯାଇ ତୁଳା ଆଣିଲେ । ତୁଳାରେ ରକ୍ତ ପୋଛିଦେଇ ବେଣ୍ଡ-ଏଡ୍ ଲଗାଇଦେଲେ ।

କୁନ୍‌ମୁନିକୁ ବେଶ୍ ଆରାମ୍ ଲାଗିଲା । ବେଣ୍ଡ-ଏଡ୍‌କୁ ଦୁଇଚାରିଥର ଭଲ ଭାବରେ ଚାହିଁ ତା' ମା'କୁ ପଚାରିଲା, "ମା' ଏ ବେଣ୍ଡ୍-ଏଡ୍ ଯିଏ ତିଆରି କରୁଛନ୍ତି, ସେ ସତରେ ଆମର କେତେ ଉପକାର କରୁନାହାନ୍ତି !" ମା' କହିଲେ, "ହଁ ସତ, ହେଲେ ତିଆରି କରିବା ଲୋକଠୁ ଉଦ୍ଭାବନ କରିଥିବା ଲୋକ ହିଁ ମହାନ୍ । ସେ ଉଦ୍ଭାବନ କରିଥିଲେ ବୋଲି ତ କୌଣସି କମ୍ପାନୀ ଏହା ତିଆରି କରୁଛି ଓ ଆମର ଦରକାର ବେଳେ କାମରେ ଆସୁଛି ।"

"ଆଛା ମା', ତମେ ତ କୁହ ଆବଶ୍ୟକତା ହେଉଛି ଉଦ୍ଭାବନର ଜନକ । ଯିଏ ଏହି ବେଣ୍ଡ-ଏଡ୍ ଉଦ୍ଭାବନ କଲେ, ତାଙ୍କର କ'ଣ ମୋ'ରି ଭଳି ହାତ କଟିଯାଇ-ଥିଲା ?" କୁନ୍‌ମୁନିର କଥା ଶୁଣି ମା' ନ ହସି ରହିପାରିଲେ ନାହିଁ । ମା'ଙ୍କ ହସ ଦେଖି କୁନ୍‌ମୁନି ଅଭିମାନ କରି କହିଲା, "ହସୁଛ ଯେ । ତମେ କୁହ ବୋଲି ସିନା ମୁଁ କହିଲି ।"

କୁନ୍‌ମୁନିକୁ ପାଖକୁ ଭିଡ଼ିଆଣି ବୋକଟେ ଦେଇ ମା' କହିଲେ, "ନା, ତୁ ଯାହା କହିଲୁ, ସତ କଥା । ଉଦ୍ଭାବକଙ୍କ ହାତ ନ କଟିଲେ ବି ହାତକଟାରୁ ବେଣ୍ଡ-ଏଡ୍‌ର ଜନ୍ମ । ଏବେ କହୁଛି ଶୁଣ--

"୧୯୨୦ ମସିହାର କଥା । ଆମେରିକାର ନିୟୁବର୍ଣ୍ଣସଉଇକ୍ ଅଞ୍ଚଳରେ ନୂଆ ବାହା ହୋଇ ସ୍ୱାମୀ ଓ ସ୍ତ୍ରୀ ରହୁଥିଲେ । ସ୍ୱାମୀଙ୍କ ନାମ ଡିକ୍ସନ ଓ ସ୍ତ୍ରୀଙ୍କ ନାମ ଯୋସେଫାଇନ୍ । ବିବାହ ପୂର୍ବରୁ ଯୋସେଫାଇନ୍‌ଙ୍କୁ ରୋଷେଇବାସ ଜଣା ନ ଥିଲା; ମାତ୍ର ଡିକ୍ସନ ସୁଆଦିଆ ରାନ୍ଧଣା ଖାଇବାକୁ ଭଲପାଆନ୍ତି । ଏଣୁ ନିଜ ସ୍ୱାମୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ଯୋସେଫାଇନ୍ ଭଲ ରୋଷେଇ ଶିଖିବାକୁ ଚେଷ୍ଟା କଲେ, ହେଲେ ଏଥିପାଇଁ ତାଙ୍କୁ ବହୁତ ଅସୁବିଧା ଭୋଗିବାକୁ ପଡ଼ିଥିଲା ।"

"ରୋଷେଇ ତ ଶିଖିବାକୁ ଚେଷ୍ଟା କଲେ, କି



ଅସୁବିଧା ସେ ଭୋଗ କଲେ ?" ଉତ୍ସୁକତାର ସହ କୁନ୍‌ମୁନି ପଚାରିଲା।

"ସେଇ କଥା ତ କହିବାକୁ ଯାଉଛି, ଶୁଣ।" ପାଖରେ ପଡ଼ିଥିବା ବେଣ୍ଡ-ଏଡ୍‌ର ଖୋଳଟା ଉଠାଇଆଣି ମା' କହିଲେ, "ଦେଖ, ଜନ୍‌ସନ୍ ନାମକ କମ୍ପାନୀ ଏଇ ବେଣ୍ଡ-ଏଡ୍ ତିଆରି କରନ୍ତି। ଡିକ୍ସନ୍ ଏହି କମ୍ପାନୀରେ ଜଣେ ସାଧାରଣ କର୍ମଚାରୀ ଭାବରେ କାର୍ଯ୍ୟ କରୁଥିଲେ। ସ୍ତ୍ରୀଙ୍କ ନୂଆ ରାନ୍ଧଣା ଡିକ୍ସନଙ୍କୁ ଏମିତି ଭଲଲାଗୁଥିଲା ଯେ ଅଫିସ୍ ଛୁଟି ହେଲା ମାତ୍ରେ ସେ କୁଆଡ଼େ ନ ଯାଇ ସିଧା ଘରକୁ ଫେରୁଥିଲେ। ହେଲେ ଘରେ ପହଞ୍ଚି ସେ ଖାଇବେ କ'ଣ, ସ୍ତ୍ରୀଙ୍କର ସେବା କରିବା ତାଙ୍କୁ ବଳି ପଡୁଥିଲା। କେବେ ଯୋସେଫାଇନ୍ ପରିବା କାଟୁ କାଟୁ ନିଜ ହାତ କାଟି ପକାଇଥିବେ ତ କେବେ ନିଆଁରେ ଦେହର କେଉଁ ଅଂଶ ପୋଡ଼ି ଫୋଟକା ହୋଇଯାଇଥିବ। ଡିକ୍ସନ ଖାଇବେ କ'ଣ, ଆଗ ଯେସୋଫାଇନ୍‌ଙ୍କ ଚିକିତ୍ସାରେ ଲାଗିଯାଉଥିଲେ।

ଜନ୍‌ସନ୍ ଏଣ୍ଡ ଜନ୍‌ସନ୍ କମ୍ପାନୀ ସେତେବେଳେ ବ୍ୟାଣ୍ଡେଜ୍ କନା ପ୍ରସ୍ତୁତ କରୁଥାଏ। ଏଣୁ ଡିକ୍ସନଙ୍କ କାମ ହେଲା କମ୍ପାନୀରୁ କିଛି ବ୍ୟାଣ୍ଡେଜ୍ କନା ସାଥିରେ ଆଣି ସ୍ତ୍ରୀଙ୍କ କଟା ବା ପୋଡ଼ା ସ୍ଥାନରେ ବାନ୍ଧୁଥିଲେ। ଏମିତି କିଛି ଦିନ କଟିଲା। ଡିକ୍ସନ୍ ବ୍ୟାଣ୍ଡେଜ୍ କନାର ବିକଳ୍ପ କଥା ଭାବିବାକୁ ଲାଗିଲେ। ସବୁ ଭାବନାର ତ ପୁଣି ଅନ୍ତ ଥାଏ। ଡିକ୍ସନ୍‌ଙ୍କ କ୍ଷେତ୍ରରେ ମଧ୍ୟ ସେଇଆ ହେଲା। ସେ ଗୋଟିଏ ନୂଆ ସିଦ୍ଧାନ୍ତରେ ଉପନୀତ ହେଲେ।

ଦିନେ ସେ ଖଣ୍ଡିଏ ଅଠାଳିଆ ଟେପ୍‌କୁ କାଟି ମଝିରେ ଔଷଧ ସହ ବର୍ଗାକାର ଗଜ୍ କନା ଲଗାଇ ଅଠା ଧରୁ ନ ଥିବା କ୍ରିନୋଲାଇନ୍ କପଡ଼ାରେ ଆବୃତ କରି ରେଡିମେଡ୍ ବେଣ୍ଡ-ଏଡ୍ ତିଆରି କଲେ। ଏଣିକି ଯୋସେଫାଇନ୍‌ଙ୍କ ଆଙ୍ଗୁଠି କଟିଗଲେ ବା କୌଣସି ସ୍ଥାନ ନିଆଁରେ ପୋଡ଼ିଗଲେ ଆଉ କିଛି ଅସୁବିଧା ହେଲା ନାହିଁ। ସେ ଏହି ବେଣ୍ଡ-ଏଡ୍‌କୁ ବ୍ୟବହାର କରି ସ୍ତ୍ରୀଙ୍କ କ୍ଷତକୁ ଆରୋଗ୍ୟ କଲେ।

ଡିକ୍ସନ୍ ନିଜେ ନିଜ ଉଦ୍ଭାବନରେ ଖୁସି ହେଲେ ସତ, ହେଲେ ତାଙ୍କ ଉଦ୍ଭାବନ ସମ୍ପର୍କରେ ଦୁନିଆ କିଛି ଜାଣିପାରିଲା ନାହିଁ। ବହୁତ ଚିନ୍ତା କରି ଦିନେ ସେ ଜନ୍‌ସନ୍ ଏଣ୍ଡ ଜନ୍‌ସନ୍ କମ୍ପାନୀର ମାଲିକଙ୍କୁ ଦେଖା କରି ନିଜ ଉଦ୍ଭାବନ ସଂପର୍କରେ କହିଲେ। କମ୍ପାନୀର ମାଲିକ ବହୁତ ବିଚାର ଓ ଆଲୋଚନା ପରେ ବେଣ୍ଡ-ଏଡ୍ ତିଆରି କରିବାର ପୃଷ୍ଠପୋଷକତା ହାତକୁ ନେଲେ ଓ ଡିକ୍ସନ୍‌ଙ୍କୁ ଏହାର ତିଆରି କରିବାର ଦାୟିତ୍ୱ ଦେଲେ।

ଏଣିକି ଡିକ୍ସନ୍ ନିଜ ସ୍ତ୍ରୀଙ୍କ ସହାୟତାରେ ବେଣ୍ଡ




ଏଡ୍ ତିଆରି କରିବାକୁ ଲାଗିଲେ। ଏହି ବେଣ୍ଡ-ଏଡ୍‌ର ଲମ୍ବ ଥିଲା ଅଠର ଇଞ୍ଚ ଏବଂ ଚଉଡ଼ା ଥିଲା ଅଢ଼େଇ ଇଞ୍ଚ। ସାଧାରଣ ଲୋକଙ୍କ ପାଇଁ ଏହା ଥିଲା ବହୁତ ବଡ଼। ଏଣୁ ଏହାର ଚାହିଦା ଆଶାନୁରୂପ ହେଲା ନାହିଁ। ପ୍ରଥମ ବର୍ଷ ଏହି ହାତତିଆରି ବେଣ୍ଡ୍-ଏଡ୍ ବିକ୍ରିରୁ ମାତ୍ର ତିନିହଜାର ଡଲାର ମିଳିଥିଲା। ଏଣୁ ବ୍ୟବସାୟିକ ଦୃଷ୍ଟିରୁ ଏହା ଲାଭପ୍ରଦ ନ ଥିଲା।

କମ୍ପାନୀ ଏହାର ବ୍ୟବସାୟିକ ଅସଫଳତାର କାରଣ ଅନୁଧ୍ୟାନ କଲା। ଶେଷରେ ୧୯୨୪ ମସିହାରେ ଏହାର ତିଆରି ଦାୟିତ୍ୱ ନିଜ ହାତକୁ ନେଲା। ଏଣିକି ଏହା ହାତରେ ନ ହୋଇ ମେସିନ୍‌ରେ ତିଆରି ହେଲା ଓ ସମସ୍ତଙ୍କର ପସନ୍ଦ ହେଲା। କ୍ରମେ କ୍ରମେ ଏହାର ଚାହିଦା ଆକାଶଛୁଆଁ ହେଲା। କାରଣ ଏହା ଶସ୍ତା ଥିଲା ଓ ଖଟିଖିଆ, ଦିନ ମଜୁରିଆଙ୍କଠାରୁ କୋଟିପତି ପର୍ଯ୍ୟନ୍ତ ସମସ୍ତଙ୍କର ଦୈନନ୍ଦିନ କାମରେ ଲାଗୁଥିଲା।

ବେଣ୍ଡ-ଏଡ୍ ବିକ୍ରିରୁ କମ୍ପାନୀ କୋଟି କୋଟି ଟଙ୍କା ଲାଭ ପାଇଲା, ହେଲେ ଡିକ୍ସନ୍ ପାଇଲେ କ'ଣ ? କମ୍ପାନୀ ତାଙ୍କୁ ସଭାପତି ଓ ପରେ ନିର୍ଦ୍ଦେଶକମଣ୍ଡଳୀର ସଦସ୍ୟ କରିଦେଲେ। ହେଲେ ଏହି ସମ୍ମାନ ଓ ପ୍ରାଚୁର୍ଯ୍ୟକୁ ଭୋଗ କରିବାର ସୌଭାଗ୍ୟ ହୁଏତ ତାଙ୍କର ନ ଥିଲା। ସେ ୧୯୬୧ ମସିହା ସେପ୍‌ଟେମ୍ବର ୨୨ ତାରିଖରେ ଇହଜଗତରୁ ଚିରଦିନ ପାଇଁ ବିଦାୟ ନେଲେ। ତାଙ୍କର ମରଶରୀର ସିନା ସବୁଦିନ ପାଇଁ ମାଟିରେ ମିଶିଗଲା, ହେଲେ ତାଙ୍କ ଉଦ୍ଭାବିତ ବସ୍ତୁଟି ପାଇଁ ସେ ସବୁଦିନେ ଜନମାନସରେ ଅମର ହୋଇ ରହିଗଲେ। ଭଲ କାମ କଲେ ମଣିଷ ମରି ବି ଅମର ହୁଏ।''

ଏତେବେଳଯାଏ କୁନ୍‌ମୁନି ଚୁପ୍‌ଚାପ୍ ହୋଇ ସବୁ ଶୁଣୁଥିଲା। ମା'ଙ୍କ କଥା ଶେଷ ହେଲାରୁ କହିଲା, ''ମା' ମୁଁ ବି ଭଲ କାମ କରି ଡିକ୍ସନ୍‌ଙ୍କ ପରି ଅମର ହେବି।''

*ୱାର୍ଡ ନଂ- ୧, ବାବୁସାହି, ବାରିପଦା- ୭୫୭୦୦୧*

---

★ ବିଜ୍ଞାନ ଶିକ୍ଷକ ପଚାରିଲେ, ''ହୀରା କି ପ୍ରକାର ଜିନିଷ ?''



ପିଲାଟିଏ ଉତ୍ତରଦେଲା, ''କୁଦ ନ ଥିବା ଓଡ଼ିଶାର ଏକ ଜଳଭଣ୍ଡାର।''

x x x

★ ଶିକ୍ଷକ- ସତ୍ୟବାଦୀର ପଞ୍ଚସଖାଙ୍କ ବିଷୟରେ କ'ଣ ଜାଣ କହିଲ ?

ଛାତ୍ର- ସେମାନେ ସମସ୍ତେ ମୃତ।

x x x

★ ଜଣେ ବିକ୍ରେତା ତୈଳ ଶିଶିଗୁଡ଼ିଏ ଧରି କହୁଥିଲେ- ଏ ତୈଳ ଲଗାଇଲେ ଚନ୍ଦା ମୁଣ୍ଡରେ ବି ବାଳ ଉଠିବ। ଜଣେ ବାଟୋଇ ପଚାରିଲେ, ''ତୁମେ ଗ୍ୟାରେଣ୍ଟି ଦେବ କି ?''

ବିକ୍ରେତା-- ହଁ, ଆମେ ପ୍ରତି ଶିଶି ସଙ୍ଗେ ଗୋଟିଏ ପାନିଆ ମାଗଣା ଦବୁ। ଅଧିକ ଗ୍ୟାରେଣ୍ଟି କ'ଣ ଚାହାନ୍ତି ?



# ରାଜକୁମାର କାଡ଼ାମସ ଓ ଡ୍ରାଗନ

ଶ୍ରୀ ନାମଯଜ୍ଞ ମିଶ୍ର

ଖ୍ରୀଷ୍ଟପୂର୍ବ କାଳରେ ପ୍ରାଚୀନ ଗ୍ରୀକ୍ ସଭ୍ୟତା ଅତ୍ୟନ୍ତ ଉନ୍ନତ ଥିଲା । ସେତେବେଳେ ଗ୍ରୀସ୍ ଦେଶରେ ନଗର ସଭ୍ୟତା ଗଢ଼ି ଉଠିଥିଲା । ଦୁର୍ଗମ ପାହାଡ଼ଘେରା ଉପତ୍ୟକାରେ ଥିବା ସମତଳ ଭୂମିଗୁଡ଼ିକରେ ନଗର ଓ ତା' ଆଖପାଖ ଅଞ୍ଚଳକୁ ନେଇ ଏକ ଏକ ନଗରରାଜ୍ୟ ଗଢ଼ି ଉଠି ଦୁର୍ଜେୟ ଥିଲା । ଆଉ କେତେକ ନଗର ରାଜ୍ୟ ସମୁଦ୍ର ଉପକୂଳରେ ଗଢ଼ି ଉଠିଥିଲା । ସେଗୁଡ଼ିକୁ କେବଳ ଜଳପଥରେ ହିଁ ଯାଇ ହେଉଥିଲା । ଫଳରେ ତାକୁ ମଧ୍ୟ ଜୟ କରିବା ଦୁଷ୍କର ଥିଲା ।

ଏହି ଗ୍ରୀକ୍ ରାଜ୍ୟଗୁଡ଼ିକ ନିଜ ନିଜ ପ୍ରଭୁପଣ ଦେଖାଇବାକୁ ପରସ୍ପର ଲଢ଼େଇ କରୁଥିଲେ; କିନ୍ତୁ ସବୁ ରାଜ୍ୟର ଲୋକ ଗ୍ରୀକ୍ ଦେବୀ 'ଏଥେନା'ଙ୍କୁ ପରମ ଭକ୍ତି ପ୍ରଦର୍ଶନ କରୁଥିଲେ । ଗ୍ରୀକ୍‌ର ଏଥେନ୍ସ୍ ରାଜ୍ୟର ସୁନ୍ଦରୀ ରାଜବଧୂଙ୍କୁ ଟ୍ରୟ ନଗରୀର ରାଜା ଚୋରାଇ ଆଣିବାରୁ ଦେବୀ ଏଥେନା କୁପିତା ହେଲେ । ନାରୀ ଅପହରଣ ଦୋଷ ଯୋଗୁଁ ଟ୍ରୟ ନଗରୀ ଧ୍ୱଂସ ହେବ ବୋଲି ଅଭିଶାପ ଦେଲେ ।

ସତକୁ ସତ ଏଥେନ୍ସ୍ ନଗରୀର ସେନା ଟ୍ରୟ ନଗରୀକୁ ଧ୍ୱଂସ କରିଦେଲେ । ଟ୍ରୟର ରାଜା ଓ ସେନାବାହିନୀ ସମ୍ପୂର୍ଣ୍ଣ ଭାବେ ନିହତ ହେଲେ । ଶଶ୍ମାନବତ୍ ବିଧ୍ୱସ୍ତ ଟ୍ରୟ ନଗରୀରରେ କୌଣସି ପ୍ରକାରେ ବଞ୍ଚି ରହିଗଲେ ରାଜକୁମାର 'କାଡ଼ାମସ୍' । ଏଥେନ୍ସ୍‌ର ସେନାବାହିନୀ ଚାଲିଯିବା ପରେ ସେ ଧ୍ୱସ୍ତବିଧ୍ୱସ୍ତ ଟ୍ରୟକୁ ସଜାଡ଼ି, ସେନା ଓ ଶାସନକଳକୁ ସଜାଡ଼ିଲେ । ସେ ଥିଲେ ଏଥେନାଙ୍କର ପରମ ଭକ୍ତ । ତାଙ୍କରି ସ୍ୱପ୍ନାଦେଶ ପାଇ ରାଜ୍ୟରେ ଗୋ'ପାଳନ କରି ଗୋ'ସେବା କଲେ । ଦେବୀ ଅଭିଶାପ ଦୂରୀଭୂତ ହେଲା । ତେବେ ଟ୍ରୟ ନଗରୀ ସୁରକ୍ଷା ଦୃଷ୍ଟିରୁ ରାଜକୁମାର କାଡ଼ାମସ୍‌ଙ୍କ ହିସାବରେ ଅନୁକୂଳ ନ ଥିବାରୁ ନୂତନ ସ୍ଥାନରେ ନଗରୀ ସ୍ଥାପନ ପାଇଁ ସେ ଚିନ୍ତା କଲେ; ମାତ୍ର ଉପଯୁକ୍ତ ସ୍ଥାନ ଖୋଜି ପାଇଲେ ନାହିଁ । ତାଙ୍କ ପ୍ରାର୍ଥନାରେ ଦେବୀ ଏଥେନା ସନ୍ତୁଷ୍ଟ ହୋଇ ସ୍ୱପ୍ନାଦେଶ ଦେଲେ ଯେ, "ଆଗାମୀ କାଲି ତୁମେ ଗୋ'ଗୋଷ୍ଠରେ ଥିବାବେଳେ ଗୋଠରୁ ଏକ ଧଳାଗାଈ ଉଠି ଚାଲିଯିବ । ତୁମେ ତାକୁ ବାଧା ନ ଦେଇ ଅନୁସରଣ କରିବ । ଗାଈଟି ଅନେକ ଦୂର ଗଲା ପରେ ଯେଉଁ ସ୍ଥାନରେ ଶୋଇବ, ସେହି ସ୍ଥାନଟିକୁ କେନ୍ଦ୍ର କରି ନଗର ବସାଇବ । ଫଳରେ ତୁମ ରାଜ୍ୟ ଦୁର୍ଭେଦ୍ୟ ଓ ଅଜେୟ ହୋଇ ରହିବ ବହୁ କାଳ ଯାଏଁ ।"

ସତକୁ ସତ ରାଜକୁମାର କାଡ଼ାମସ୍ ଗାଈଟିକୁ ଆପଣା ଅନୁଚରଙ୍କ ସହ ଅନୁସରଣ କରି ଏକ ପାହାଡ଼ଘେରା ସମତଳ ଭୂମିରେ ପ୍ରବେଶ କଲେ ଓ ଗାଈଟିର ଶୋଇବା ସ୍ଥାନରେ ଠିଆ ହୋଇ ସେଠାରେ ନଗର ନିର୍ମାଣର ଯୋଜନା କଲେ । ନିକଟରେ କୌଣସି ଜଳଉତ୍ସ ଅଛି କି ନାଁ ଅନୁସନ୍ଧାନ ପାଇଁ ଅନୁଚରଙ୍କୁ ଆଦେଶ ଦେଲେ । ଅନୁଚରଗଣ ଶବ୍ଦ ବାରି ପାହାଡ଼ ଉପରକୁ ଚଢ଼ନ୍ତେ ପର୍ବତ ଶିଖରରୁ ଏକ ମନୋରମ ଜଳପ୍ରପାତ ଗଡ଼ି ଆସୁଥିବା ଦେଖିବାକୁ ପାଇଲେ । ଏମାନଙ୍କୁ ଦେଖି ସେଇ ପାଖରେ ଥିବା ଏକ ବିରାଟ ଡ୍ରାଗନ୍ ଏମାନଙ୍କ ଆଡ଼କୁ ମାଡ଼ି ଆସିଲା ଖାଇବ ବୋଲି ମୁହଁ ମେଲାଇ । 'ଡ୍ରାଗନ୍' କହିଲେ ପଶୁର ମୁହଁ ଭଳି ଥିବା ଏକ ପ୍ରକାଣ୍ଡ ସର୍ପ । ଭୟଙ୍କର ମୁଖରେ ଶାବକ ଭଳି


Cadmus slaying the Dragon

ଥିଲା ବିରାଟ ବିରାଟ ଦାନ୍ତ । ମୁଖଗହ୍ୱରରୁ ବାହାରୁଥାଏ ଖାଲି ନିଆଁ । ଆଖିଦୁଇଟି ରଡ଼ ନିଆଁ ଭଳି ଜଳୁଥାଏ । ମୁହଁ ମେଲାଇ ଧାଇଁ ଆସୁଥାଏ । ତାକୁ ଦେଖି ଅନୁଚରଗଣ ଧନୁତୀର ବିନ୍ଧିଲେ, ଖଣ୍ଡାରେ ମାରିଲେ; ମାତ୍ର ତା ଦେହରେ ପଡ଼ି ସେସବୁ ଚୂର୍ଣ୍ଣ ହୋଇଗଲା । ଭୟରେ ସେମାନେ ପଳାଇବାବେଳେ ଡ୍ରାଗନଟି ସେମାନଙ୍କୁ ଗୋଟି ଗୋଟି ଧରି ଗିଳି ପକାଇଲା ଓ ପାହାଡ଼ ତଳରେ ଥିବା ରାଜକୁମାରଙ୍କ ନିକଟକୁ ଧାଇଁଗଲା । ତାକୁ ଦେଖି ରାଜକୁମାର ଦେବୀ ଏଥେନାଙ୍କୁ ଭୟରେ ସ୍ମରଣ କରିବାରୁ ଦେବୀ କହିଲେ, "ଏ ଡ୍ରାଗନ୍ ତୁମ ହାତରେ ମରିବ, କିନ୍ତୁ ସାବଧାନ ! ଏହାର ଅସ୍ଥିସବୁକୁ ଗୋଟାଇ, ଜୁଟାଇ ପୋଡ଼ିଦେବ, ନଚେତ୍ ବିପଦ ଅଛି ।"

ରାଜକୁମାର ଦେବୀଙ୍କ ଆଦେଶ ପାଇ ବିକ୍ରମ ସହକାରେ ଲଢ଼ିଲେ । ଦେବୀ କୃପାରୁ ତାଙ୍କ ଖଣ୍ଡା ଚାଳନାରେ ଖଣ୍ଡ ଖଣ୍ଡ ହୋଇ ଅସ୍ଥି ଚତୁର୍ଦ୍ଦିଗରେ ବିଛାଡ଼ି ହୋଇ ପଡ଼ିଲା । ଖଣ୍ଡିତ ଅସ୍ଥିରୁ ଧୂଆଁ ବାହାରୁଥିବାରୁ ସେଗୁଡ଼ିକ ଗୋଟାଇ ଏକାଠି କରିବାକୁ ରାଜପୁତ୍ର ଶୀତଳିବା ପର୍ଯ୍ୟନ୍ତ ଅପେକ୍ଷା କଲେ । ମାତ୍ର ଏ କ'ଣ ? ସେ ପ୍ରତ୍ୟେକ ଅସ୍ଥିରୁ ବିରାଟକାୟ ଯୋଦ୍ଧାଟିଏ ଲେଖାଏଁ ଅସ୍ତ୍ରଶସ୍ତ୍ର ଧରି ବାହାରିପଡ଼ିଲେ ଓ ରେ' ରେ'କାର କରିବାକୁ ଲାଗିଲେ । ଭୟ ହେତୁ ରାଜକୁମାର ଏକ ଘଞ୍ଚ ଲତା ଥିବା ନିଭୃତ ସ୍ଥାନରେ ନିଜକୁ ଗୋପନ କରିନେଲେ ଓ ସେଠାରେ ଥାଇ ପଥର ଖଣ୍ଡମାନ ପିଙ୍ଗିବାରେ ଲାଗିଲେ ।

ସେଇ ଡ୍ରାଗନ ଯୋଦ୍ଧାଗଣ ପରସ୍ପରକୁ ପଥର ମାରିଥିବା ସନ୍ଦେହ କରି ଆପଣା ଆପଣା ଭିତରେ ମରାମରି ହେଲେ । ଶେଷକୁ ସମସ୍ତେ ନିହତ ହେବା ପରେ କେବଳ ପାଞ୍ଚଜଣ ଶକ୍ତିଶାଳୀ ଯୋଦ୍ଧା, ଯେଉଁମାନେ କି ମରାମରିରେ ଭାଗ ନ ନେଇ ଆଡ଼େଇ ଠିଆ ହୋଇଥିଲେ, ସେମାନେ ବଞ୍ଚି ରହିଥିଲେ । ରାଜପୁତ୍ର ନିରେଖି ଦେଖିଲେ ଯେ ସେହି ପାଞ୍ଚଜଣ ଯୋଦ୍ଧା ହେଉଛନ୍ତି ତାଙ୍କରି ସେଇ ଅନୁଚର, ଯେଉଁମାନଙ୍କୁ କି ଡ୍ରାଗନ୍ ଗିଳି ପକାଇଥିଲା । ସେମାନେ ଡ୍ରାଗନ୍ର ପେଟରେ ରହି ଅତ୍ୟନ୍ତ ବଳଶାଳୀ ପାଲଟି ଯାଇଥିଲେ, କିନ୍ତୁ ମନୁଷ୍ୟ ସ୍ୱଭାବ ଛାଡ଼ି ନ ଥିଲେ । ତେଣୁ ନିଜ ପ୍ରଭୁ ରାଜକୁମାରଙ୍କୁ ଦେଖି ଅଭିବାଦନ ଜଣାଇଲେ ।

ରାଜକୁମାର ସେହି ସ୍ଥାନରେ ଡ୍ରାଗନ୍‌ଯୋଦ୍ଧାଙ୍କୁ ପୋଡ଼ି ଏକ ନୂତନ ନଗର ବସାଇଲେ ଓ ସେହି ପାଞ୍ଚଯୋଦ୍ଧାଙ୍କୁ ନିଜର ସେନାନାୟକ ପଦ ଅର୍ପଣ କଲେ । ରାଜକୁମାର କାଡ଼ମସ୍ ରାଜା ହୋଇ ଏହି ନଗରର ନାମ ରଖିଲେ 'ଥିବସ୍' ବା 'ଥେବସ୍' । ଏହି ଥେବସ୍ ନଗରୀ ହଜାର ହଜାର ବର୍ଷ ପର୍ଯ୍ୟନ୍ତ ଅଜେୟ ଓ ସମୃଦ୍ଧ ହୋଇ ରହିଥିଲା । ବହୁ ଶତାବ୍ଦୀ ପରେ ଦିଗ୍‌ବିଜୟୀ ଆଲେକ୍‌ଜାଣ୍ଡର ଏହାକୁ ଜୟ କରିଥିଲେ ।

*ବରପାଲିପଡ଼ା, ବଲାଙ୍ଗିର- ୭୬୭୦୦୧*



# ଶ୍ରବଣପୁରରୁ ନୟନପୁର

**ଶ୍ରୀ ରମେଶ ଚନ୍ଦ୍ର ଭଞ୍ଜ**

ବେଶି ବାଟ ନୁହେଁ, ଅଳପ ଦୂର,
ଶ୍ରବଣପୁରରୁ ନୟନପୁର।
ମଥା ରାଇଜର ଗହନ କଥା
ନୟନପୁରରେ ରହିଛି ପତା,
ଶ୍ରବଣପୁରରେ ନାହିଁ,
ଶ୍ରବଣପୁରରୁ ପଡ଼ିଛି ସୁଡ଼ଙ୍ଗ
ଗିରିକୁ ଛୁଇଁଛି ଯାଇ।
ଶ୍ରବଣପୁରକୁ ଶୁଭଇ କଥା,
ବେଳେ ବେଳେ ତାହା ଘୂରାଏ ମଥା।
ନୟନପୁରରୁ ଫିଟିଲେ ପତା,
ଦିଶିଯାଏ ଦଶ ଦିଶର ସତ୍ତା,
ସତ, ମିଛ ହୁଏ ଜାଣି,
ଶୁଣା ଶବଦରୁ ଶ୍ରବଣ ସେତିକି
ପାରେ ନାହିଁ ପରିମାଣି।
ଉଡ଼ା, ବୁଡ଼ା, ଗାଲୁ, ଭୁରୁଡ଼ି, ବୋଲି
ଶ୍ରବଣ ପଥକୁ ପଶିଲେ ଖୋଲି-
ଭଲ ଭେଲ ମନ ନ ପାରେ କଳି,
ଗୋଟାଏ କଥାକୁ ସତର ଭଳି-
ଶୁଣି ଶୁଣି ହୁଏ ବୋକା।
ନୟନ ପଥରେ ପଡ଼ିଗଲେ ଥରେ
ମନରେ ନ ଥାଏ ଧୋକା।
ଶ୍ରବଣ ପଥରୁ ନୟନ ପଥ,
ବାଟ ଚଉକାଏ ମିଛଠୁଁ ସତ।

'ଯାହା ନ ଦେଖିବ ବେନି ନୟନେ,
ପରତେ ନ ଯିବ ଗୁରୁବଚନେ'।
ରହିଛି ମହତବାଣୀ,
ନାନା ଆଡୁ ଆନ କାନକୁହା ଶୁଣି
ମନକୁ ନ ନେବ ଟାଣି।
ଶ୍ରବଣ, ନୟନ ଯତନ ନିଅ,
ଜୀବନଟା ସୁଖେ କଟାଇଦିଅ,
ସଦାଳାପ ପାଇଁ ପତାଅ କାନ,
ସଦା ଦେଖୁଥାଅ ସବୁଜ ଥାନ,
ବଢ଼ିବ ନୟନ ତେଜ,
ଗୁରୁ, ଗୁରୁଜନ ମହତ ବଚନ
ମନରେ ଟିକିଏ ହେଜ।

*ବୁଢ଼ୀବଗିଚା, ସାମନ୍ତରାପୁର, ଖୋର୍ଦ୍ଧା*





ପୃଥିବୀର ସବୁଠାରୁ ଉଚ୍ଚତମ ଚକ୍ରିଖେଳ (Chained Carousel) ଭିଏନାଠାରେ ଦେଖାଯାଏ। ଏହାର ଉଚ୍ଚତା ୧୧୭ ମିଟର (୪୦୦ ଫୁଟ)।

# ଭଗବାନଙ୍କ ଲୀଳା

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

୨୦୦୪ ମସିହାରେ ତାମିଲନାଡୁ ଉପକୂଳରେ ସଂଘଟିତ ହେଲା ଭୟାବହ ସୁନାମି। ସମୁଦ୍ରରୁ ବିରାଟ ବିରାଟ ଢେଉ ଉଠି କୂଳକୁ ମାଡ଼ିଆସିଲା।

ସେଦିନ ଥାଏ ଏମ୍. ପରମେଶ୍ୱରନ୍‌ଙ୍କ ୪୦ତମ ଜନ୍ମତିଥି। ଜନ୍ମତିଥିରେ ମଉଜ କରିବା ପାଇଁ ସେ ଯାଇଥିଲେ ସମୁଦ୍ର କୂଳକୁ । ସାଙ୍ଗରେ ନିଜର ତିନି ସନ୍ତାନ ଏବଂ ସାତଜଣ ଆତ୍ମୀୟ। ସମସ୍ତେ ସମୁଦ୍ରରେ ଗାଧୋଇବାର ମଜା ନେଉଥିବାବେଳେ ମାଡ଼ିଆସିଲା ସୁନାମି ଢେଉ।

ପରମେଶ୍ୱରନ୍‌ଙ୍କ ଘର ନାଗପଟ୍ଟିନମ୍ ନିକଟସ୍ଥ ଏକ ଗାଁ'ରେ। ସେମାନଙ୍କ ଘର ସମୁଦ୍ରକୂଳରୁ ମାତ୍ର ଅଧକିଲୋମିଟର ଦୂର।

ସୁନାମି ଢେଉ ଆସିବାବେଳେ ପରମେଶ୍ୱରନ୍ ତାଙ୍କ ପୁଅର ହାତ ଧରିଥିଲେ। କିନ୍ତୁ ସମୁଦ୍ର ଢେଉ ଖୁବ୍ ଜୋର୍‌ରେ ଆସି ତାଙ୍କ ହାତରୁ ପୁଅକୁ ଝିଙ୍କିନେଲା। ସେ ଗୋଟିଏ ବଡ଼ ଡାଳକୁ ଜାବୁଡ଼ି ଧରି କୌଣସି ପ୍ରକାରେ ବଞ୍ଚିଗଲେ। ତାଙ୍କ ମୁଠାରୁ ପୁଅ ଖସିଯିବା ପାଇଁ ମୁହୂର୍ତ୍ତିଏ ବି ସମୟ ଲାଗିଲାନି।

ବିରାଟ ଢେଉରେ ସମୁଦ୍ର ଭିତରକୁ ଭାସିଗଲେ ତାଙ୍କର ତିନି ସନ୍ତାନ ଏବଂ ଶାଶୂ, ଶ୍ୱଶୁର। ପରମେଶ୍ୱରନ୍ କହନ୍ତି, ''ମୋ' ଆଖି ଆଗରେ ଏ କଅଣ ଘଟିଗଲା, ତାହା ମୁଁ ବୁଝିପାରିଲିନି। ମୋ' ସ୍ତ୍ରୀ ପି.ଚୂଡ଼ାମଣି ରହିଥିଲେ ଘରେ । ସେ ରୋଷେଇବାସ ସାରି ଆମ ସହ ସମୁଦ୍ରକୂଳରେ ଆସି ଯୋଗ ଦେଇଥାନ୍ତେ। କିନ୍ତୁ ତା'ପୂର୍ବରୁ ସମୁଦ୍ରଜଳ ଗିଳି ପକେଇଥିଲା ତାଙ୍କର ତିନି ପିଲାଙ୍କୁ ।

''ଆମେ ସ୍ୱାମୀସ୍ତ୍ରୀ ଦୁହେଁ ଆମ ପିଲାଙ୍କୁ ବହୁତ ଖୋଜାଖୋଜି କଲୁ । ଖୋଜାଖୋଜି କଲୁ ଆମ ଆତ୍ମୀୟମାନଙ୍କୁ; ହେଲେ ଆମେ କାହାରିକୁ ଜିଅନ୍ତା ପାଇଲୁନି । ଆମକୁ ମିଳିଲା ସେମାନଙ୍କର କେବଳ ଶବଗୁଡ଼ିକ। ମାତ୍ର କେଇଟା ଘଣ୍ଟା ଭିତରେ ଆମର ସଂସାର ଓଲଟପାଲଟ ହୋଇଗଲା।''

କିନ୍ତୁ ପରମେଶ୍ୱରନ୍ ଏବଂ ଚୂଡ଼ାମଣି ଭାଙ୍ଗି ପଡ଼ିଲେନି। ଏହି ଦୁର୍ଦ୍ଦିନ ଓ ଦୁର୍ଭାଗ୍ୟ ସେମାନଙ୍କର ମନୋବଳକୁ ଖୁବ୍ ବଢ଼େଇଦେଲା। ବରଂ ଏହି ଅଚାନକ ବିପର୍ଯ୍ୟୟ ଯୋଗୁ ଅନାଥ ହୋଇପଡ଼ିଥିବା ପିଲାଙ୍କୁ ଥଇଥାନ କରିବା ପାଇଁ ସେଇ ସମୁଦ୍ରକୂଳରେ ହିଁ ସ୍ୱାମୀସ୍ତ୍ରୀ ନିଷ୍ପତ୍ତି ନେଲେ।

ପରମେଶ୍ୱରନ୍ କହନ୍ତି, ''ସମୁଦ୍ରବେଳାରେ ଆମେ ଯେତେବେଳେ ଆମ ପିଲାଙ୍କୁ ଖୋଜି ଚାଲିଥିଲୁ, ଆମେ ଦେଖିଲୁ କେଉଁ ପିଲାର ବାପମାଆଙ୍କ ଭିତରୁ କେହି ଜଣେ ଭାସି ଯାଇଛନ୍ତି ସମୁଦ୍ର ଭିତରକୁ। କେଉଁ ପିଲା ତାର ବାପମାଆ ଉଭୟଙ୍କୁ ହରେଇ ମୂକ ଭଳି ସମୁଦ୍ରକୁ ଚାହିଁ ଠିଆ ହୋଇଛି। ସେଭଳି ବାପମା ଛେଉଣ୍ଡ ପିଲାମାନଙ୍କ ପାଇଁ ଖାଇବା ଲୋଡ଼ା, ଲୋଡ଼ା ରହିବା ଯାଗା। ହୁଏତ



ଭଗବାନ ଚାହିଁଲେ ଯେ ଆମେ ଆମ ପିଲାଙ୍କୁ ହରେଇ ଅନ୍ୟ କେତେକ ପିଲାଙ୍କ ପାଳକ ପିତାମାତା ପାଲଟିଯିବୁ।



"ଆମ ଘରକୁ ଆମେ ଗୋଟିଏ ଅନାଥାଶ୍ରମରେ ପରିଣତ କରିଦେଲୁ। ଏହି ଦୁର୍ବିପାକ ଘଟିବାର ଚାରିଦିନ ଭିତରେ ଆମେ ଚାରିଜଣ ଅନାଥ ପିଲାଙ୍କୁ ଆମ ଘରେ ଆଶ୍ରୟ ଦେଇପାରିଲୁ। ତା'ପରେ ମୁଁ ଆଖପାଖ ଗାଁଗୁଡ଼ିକୁ ଯାଇ ଅନାଥ ପିଲାମାନଙ୍କ ଖୋଜଖବର ନେଲି। ଏବେ ଆମ ଘରେ ଆଶ୍ରୟ ନେଇଛନ୍ତି ୨୭ଜଣ ନିରାଶ୍ରୟ ପିଲା। ସେମାନଙ୍କ ଭିତରୁ ସାତ ଜଣ ଝିଅ। ସେମାନଙ୍କ ରହିବା, ଖାଇବା, ପିନ୍ଧିବା ଏବଂ ପାଠ ପଢ଼ିବା ଇତ୍ୟାଦି ସବୁ ଦାୟିତ୍ୱ ଆମ ପତିପତ୍ନୀଙ୍କର। ସେଇ ପିଲାମାନଙ୍କ ଭିତରୁ ପୁଅଟିଏ ଏବେ ଥାଞ୍ଜାଭୁରର ବେସରକାରୀ ଇଂଜିନିୟରିଂ କଲେଜରେ ସାମୁଦ୍ରିକ ଇଂଜିନିୟରିଂ ପଢୁଛି।

"ଆମେ ସିନା ତିନି ପିଲାଙ୍କୁ ହରେଇଥିଲୁ; ଏବେ କିନ୍ତୁ ଆମେ ପାଖାପାଖି ତିରିଶଜଣ ପିଲାଙ୍କ ପିତାମାତା। ସେମାନଙ୍କୁ ଚାହିଁ ଆମେ ସନ୍ତାନ ଶୋକ ପାସୋରି ପକେଇବା ନିମନ୍ତେ ପ୍ରୟାସ କରୁଛୁ।"

ଭଗବାନଙ୍କ ଲୀଳାଖେଳା ତଥା ଉଦ୍ଦେଶ୍ୟକୁ ବୁଝିବା ପାଇଁ ଆମର ଶକ୍ତି କାହିଁ ?"

*'ଅଭୀପ୍ସା', ସେକ୍ଟର-୬, ପ୍ଲଟ୍ ନଂ-୧୧୩୧, ଅଭିନବ ବିଡ଼ାନାସୀ, କଟକ- ୭୫୩୦୧୪*

**




ଶ୍ରୀ ତିତାରାମ ନନ୍ଦ ବ୍ରହ୍ମଚାରୀ

୧। ଇ.ଭି.ଏମ୍ (ଇଲେକ୍ଟ୍ରୋନିକ୍ ଭୋଟିଙ୍ଗ୍ ମେସିନ୍) ପ୍ରଥମେ କେବେ ଓ କେଉଁଠାରେ ବ୍ୟବହୃତ ହୋଇଥିଲା?

୨। ନରେନ୍ଦ୍ର ମୋଦିଙ୍କର ମା'ଙ୍କ ନାମ କ'ଣ ?

୩। "ଗୋଲ୍ଡମ୍ୟାନ୍ ଏନ୍‌ଭାରନ୍‌ମେଣ୍ଟାଲ୍ ପୁରସ୍କାର" ପାଇଥିବା ପ୍ରଥମ ଭାରତୀୟ ମହିଳାଜଣଙ୍କ କିଏ ?

୪। 'ବର୍ଷା ବସନ୍ତ ବୈଶାଖ' ଉପନ୍ୟାସଟିର ରଚୟିତା କିଏ ?

୫। ନାଗାର୍ଜୁନ ସାଗର ଡ୍ୟାମ୍ କେଉଁ ନଦୀ ଅବବାହିକାରେ ଗଢ଼ି ଉଠିଛି ?

୬। ଓଡ଼ିଶାର କେଉଁ ଜିଲ୍ଲାକୁ 'ସିଟି ଅଫ୍ ସେଣ୍ଟ୍' କୁହାଯାଏ ?

୭। ମୋଗଲ ସମ୍ରାଟ ଆକବରଙ୍କର ପ୍ରଥମ ବେଗମ୍ କିଏ ଥିଲେ ?

୮। ଫକିରୁଦ୍ଦିନ୍ ଅଲ୍ଲି ଅହମ୍ମଦ ପୁରସ୍କାର କେଉଁ କ୍ଷେତ୍ରରେ ଉତ୍କର୍ଷତା ପାଇଁ ପ୍ରଦାନ କରାଯାଇଥାଏ ?

*ଗଡ଼ସାହି, ବାଲିଆପାଳ, ସିଂଲା, ବାଲେଶ୍ୱର- ୭୫୬୦୨୩*

*(ଉତ୍ତର ୧୭ ପୃଷ୍ଠାରେ)*

---

ଭ୍ରମ ସଂଶୋଧନ-- ଗତ ମାସରେ ସା.ଜ୍ଞା. ପରୀକ୍ଷାର ଉତ୍ତର ହେବ-- ୮। ମଣିପୁର, ୯। ଅଗଷ୍ଟ ୬, ୧୯୫୨, ୧୦। Research Development eXplosive । ଏହି ଅନିଚ୍ଛାକୃତ ତ୍ରୁଟି ପାଇଁ ଆମେ ଦୁଃଖିତ ।



ଶ୍ରୀ ସୁରେଶ କୁମାର ପଣ୍ଡା

## ★ ମୋତେ ଦେଖି ହସୁଛ ନା ମୋ ନିର୍ମାତାଙ୍କୁ?

ଦିଲ୍ଲୀର ବାଦଶାହ ଶେରସାହ ସୁରୀଙ୍କ ସମୟରେ ଜଣେ ପ୍ରସିଦ୍ଧ କବି ଥିଲେ-- ମାଲିକ୍ ମହମ୍ମଦ ଜାୟସୀ। ସେ ଥିଲେ ଜଣେ ପ୍ରେମମାର୍ଗୀ ସୁଫି ସନ୍ଥ। 'ଅବଧ' ଭାଷାରେ ତାଙ୍କଦ୍ୱାରା ରଚିତ 'ପଦ୍ମାବତ' ନାମକ କାବ୍ୟଗ୍ରନ୍ଥ ସେ ସମୟରେ ଅତ୍ୟନ୍ତ ପ୍ରସିଦ୍ଧି ଲାଭ କରିଥିଲା; କିନ୍ତୁ ତାଙ୍କର ଚେହେରା ଥିଲା ଅତ୍ୟନ୍ତ ଅସୁନ୍ଦର।



ଥରେ ଶେରସାହଙ୍କ ଅନୁରୋଧରେ ଜାୟସୀ ଦରବାରରେ ଉପସ୍ଥିତ ହେଲେ। ତାଙ୍କର ଅସୁନ୍ଦର ରୂପ ଓ ବେଶଭୂଷା ଦେଖି ଦରବାରରେ ସମସ୍ତେ ହସିଉଠିଲେ। ତାହା ଦେଖି ଜାୟସୀଙ୍କ ପାଦ ଥମିଗଲା।



ସିଏ ବିନମ୍ର ଭାବରେ ଦରବାରକୁ ସମ୍ବୋଧନ କରି ପଚାରିଲେ, "ଆପଣମାନେ କାହାକୁ ଦେଖି ହସୁଛନ୍ତି ? ମୋତେ ନାଁ ମୋତେ ଯିଏ ତିଆରି କରିଛନ୍ତି, ତାଙ୍କୁ ଦେଖି ?"

ତାଙ୍କର ପ୍ରଶ୍ନ ଶୁଣି ହସୁଥିବା ସମସ୍ତ ଲୋକଙ୍କର ମୁହଁ ତଳକୁ ହୋଇଗଲା। ଶେରଶାହ ଆସନରୁ ଉଠି ତାଙ୍କୁ ଅଭ୍ୟର୍ଥନା କଲେ। ସିଏ ଯିବା ପରେ ଶେରସାହ ଉପସ୍ଥିତ ବ୍ୟକ୍ତିମାନଙ୍କୁ କହିଲେ, "କାହାର ଅସୁନ୍ଦର ରୂପ ଦେଖି ହସିବା ଅର୍ଥ ହେଉଛି-- ତାହାର ନିର୍ମାତା ଈଶ୍ୱରଙ୍କୁ ଉପହାସ କରିବା।"

## ★ ସରସ୍ୱତୀଙ୍କ ଅପମାନ



ହିନ୍ଦୀ ଭାଷାର ପ୍ରଖ୍ୟାତ ସାହିତ୍ୟିକ ମହାବୀର ପ୍ରସାଦ ଦ୍ୱିବେଦୀ 'ସରସ୍ୱତୀ' ନାମକ ଏକ ପତ୍ରିକାର ସମ୍ପାଦନା କରୁଥିଲେ। ସେତେବେଳେ ସିଏ ନିଜର ସାହିତ୍ୟ କୃତି ଯୋଗୁଁ ଅତ୍ୟନ୍ତ ପ୍ରସିଦ୍ଧ ଥିଲେ। ଥରେ ଜଣେ ଶିଳ୍ପପତି ନିଜ କାରଖାନାରେ ପ୍ରସ୍ତୁତ ଏକ ଚିନିବସ୍ତା ଆଣି ତାଙ୍କୁ ଉପହାର ଦେଲେ। ତାଙ୍କର ଉଦ୍ଦେଶ୍ୟ ଥିଲା, ଏଥିରେ ପ୍ରୀତ ହୋଇ ଦ୍ୱିବେଦୀ ମହାଶୟ ତାଙ୍କ ବିଷୟରେ ସରସ୍ୱତୀ ପତ୍ରିକାରେ କିଛି ପ୍ରଶଂସାସୂଚକ ଲେଖା ଛାପିବେ, ଯାହାଫଳରେ ତାଙ୍କ କାରଖାନର ଖ୍ୟାତି ବୃଦ୍ଧି ହେବ।

ମାସକ ପରେ ସେଇ ଶିଳ୍ପପତି ତାଙ୍କୁ ସାକ୍ଷାତ କରି ଦେଇଥିବା ଚିନି ବିଷୟ ସ୍ମରଣ କରାଇଦେଲେ। ମହାବୀର ପ୍ରସାଦ ତାଙ୍କ ଉଦ୍ଦେଶ୍ୟ ବୁଝିପାରି ଘର-କୋଣରେ ରଖାଯାଇଥିବା ଚିନିବସ୍ତାକୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, "ଆପଣ ଚାହିଁଲେ, ତାକୁ ନେଇଯାଇ-ପାରନ୍ତି; କିନ୍ତୁ ମୁଁ 'ସରସ୍ୱତୀ' (ସମ୍ପାଦନା କରୁଥିବା ପତ୍ରିକା)-କୁ ବ୍ୟବସାୟର ମାଧ୍ୟମ କରିଦେଇ ପାରିବି ନାହିଁ ।"

## ★ ରାଷ୍ଟ୍ରର ପ୍ରହରୀ



ମୋଗଲ ସମ୍ରାଟ ବାହାଦୁର ଶାହ ଜାଫର ଇଂରେଜମାନଙ୍କ ଦ୍ୱାରା ବନ୍ଦୀ ହୋଇ ନିଜର ଶେଷ ଜୀବନ ଅତ୍ୟନ୍ତ କଷ୍ଟରେ ବିତାଉଥା'ନ୍ତି। ଥରେ ଜଣେ ବ୍ୟକ୍ତି ତାଙ୍କୁ ସାକ୍ଷାତ କରି ପଚାରିଲା, "ସମ୍ରାଟ ! ଆପଣଙ୍କ ଭଳି ଜଣେ ସମ୍ରାଟଙ୍କୁ ଏଠି ସାଧାରଣ ବନ୍ଦୀ ଭଳି ନିର୍ଯ୍ୟାତନା ଦିଆଯାଉଛି। ଆପଣ ପ୍ରତିବାଦ କରୁନାହାନ୍ତି କାହିଁକି ?"

ତାହା ଶୁଣି ଶାହ କହିଲେ, "ଏଥିରେ କାହାର କିଛି ଦୋଷ ନାହିଁ। ସବୁ ମୋର କୃତକର୍ମର ଫଳ। ରାଜା ହେଉଛନ୍ତି ଦେଶର ଜାଗ୍ରତ ପ୍ରହରୀ। ମୋତେ ସେଥିପାଇଁ ଆଗରୁ ସତର୍କ ରହିବାର ଥିଲା। ମୁଁ କିନ୍ତୁ ତାହା ନ କରି ବିଳାସବ୍ୟସନରେ କାଳ କାଟିଲି। ସମୟ ପୂର୍ବରୁ ଜାଗ୍ରତ ନ ହେବାରୁ ମୁଁ ଶତ୍ରୁମାନଙ୍କ ଦ୍ୱାରା ପରାସ୍ତ ହେଲି। ଏହାଠାରୁ ବଳି ଅପରାଧ ଆଉ କ'ଣ ହୋଇପାରେ ?"

*ବି. ସିଂହପୁର, ଗୁମୁଡ଼ା, କୋରାପୁଟ*



### ବିଶ୍ୱାସ କର ବା ନ କର

୭୦ ବର୍ଷ ଭିତରେ ଜଣେ ସାଧାରଣ ମଣିଷ ଯାହା ସବୁ ଖାଏ, ତାକୁ ଯଦି ଏକାଠି କରି ହୁଅନ୍ତା; ତେବେ ୨୫ଟନ୍‌ର ଏକ ଟ୍ରକ ବୋଝେଇ ହୋଇଯାଆନ୍ତା।

# ମହାରାଜା ଭରତ ଚରିତ

ଶ୍ରୀ ଶତ୍ରୁଘ୍ନ ପଟ୍ଟନାୟକ

ମହାରାଜ ଭରତଙ୍କ ପିତା ମହାପରାକ୍ରମୀ, ପ୍ରଜାବତ୍ସଳ, ନ୍ୟାୟବାନ୍, ଧର୍ମାତ୍ମା ମହାରାଜ ଦୁଷ୍ମନ୍ତ। କଣ୍ୱମୁନିଙ୍କ ପାଳିତା କନ୍ୟା ତଥା ସ୍ୱର୍ଗର ଅପସ୍‌ରୀ ମେନକାଙ୍କ ଗର୍ଭରୁ ଓ ମହାମୁନି ଗାଦିପୁତ୍ର ବିଶ୍ୱାମିତ୍ରଙ୍କ ଔରସରୁ, ସ୍ୱର୍ଗର ଦେବତା ଦେବରାଜ ଇନ୍ଦ୍ରଙ୍କ ଉଦ୍ୟମରୁ ଏ ଧରାଧାମରେ ଆବିର୍ଭୂତ ହୋଇଥିଲେ ମହରାଜ ଭରତ। ତାଙ୍କର ଜନ୍ମବୃତ୍ତାନ୍ତ ଅତ୍ୟନ୍ତ ହୃଦୟସ୍ପର୍ଶୀ ତଥା ଉଜ୍ଜ୍ୱଳ କିମ୍ବଦନ୍ତୀ ବହନକାରୀ ଏକ ପ୍ରବହମାନ ଦୃଷ୍ଟାନ୍ତ।

ମହାରାଜା ଭରତ ଯେହେତୁ ମୁନିକନ୍ୟା ଶକୁନ୍ତଳାଙ୍କ ଗର୍ଭରୁ ଆଶ୍ରମରେ ଜନ୍ମଗ୍ରହଣ କରି ନିଜର ବାଲ୍ୟଲୀଳା ମହାମୁନି କଣ୍ୱଙ୍କ ଆଶ୍ରମରେ ଅତିବାହିତ କରିଥିଲେ, ତେଣୁ ତାଙ୍କର ଧର୍ମଭାବ ତଥା ସାଧୁ-ସନ୍ନ୍ୟାସୀମାନଙ୍କୁ ସମ୍ମାନ ଓ ଭକ୍ତି ପ୍ରଦାନ କରିବା ଗୁଣ ଅଧିକ ଥିଲା। ସେ ସର୍ବଦା ନିଜକୁ ଧର୍ମକାର୍ଯ୍ୟରେ ନିୟୋଜିତ କରୁଥିଲେ। ତାଙ୍କ ରାଜତ୍ୱ କାଳରେ ସେ ବହୁ ଅଶ୍ୱମେଧ ଯଜ୍ଞ, ରାଜସୂ ଯଜ୍ଞ ଓ ଦାନଧର୍ମ ଦ୍ୱାରା ସାଧୁସନ୍ଥମାନଙ୍କ ହୃଦୟ ଜିଣି ପାରିଥିଲେ। ରାଜ୍ୟକାର୍ଯ୍ୟ ତୁଲାଇ ସେ ସର୍ବଦା ପରମାତ୍ମା ପରମପୁରୁଷ ଶ୍ରୀହରି ପ୍ରଭୁ ନାରାୟଣଙ୍କଠାରେ ଚିତ୍ତ ନିମଗ୍ନ କରି ପରମ ତୃପ୍ତିଲାଭ କରୁଥିଲେ। ଭକ୍ତି ନୈବେଦ୍ୟପ୍ରାପ୍ତି ପାଇଁ ସବୁ ଦେବାଦେବୀ ତାଙ୍କୁ ଆଶୀର୍ବାଦ ପ୍ରଦାନପୂର୍ବକ ସର୍ବଦା ମହାରାଜା ଭରତଙ୍କ ରକ୍ଷାକବଚ ସାଜି ତାଙ୍କର

ମଙ୍ଗଳାର୍ଥେ ପ୍ରସନ୍ନ ଚିତ୍ତରେ ରାଜ୍ୟରକ୍ଷା କରିବା ପାଇଁ ସଂକଳ୍ପବଦ୍ଧ ହେଉଥିଲେ। ରାଜର୍ଷି ଭରତ ସହସ୍ରବର୍ଷ ସୂଚାରୁରୂପେ ରାଜତ୍ୱ କରି ତାଙ୍କ ସାମ୍ରାଜ୍ୟ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ କରିଥିଲେ। ଜଣେ ଶ୍ରେଷ୍ଠ ସମ୍ରାଟ ରୂପେ ଖ୍ୟାତି ଅର୍ଜନ କରିଥିଲେ।



ଥରେ ରାଜର୍ଷି ଭରତ ଗଣ୍ଡୁକୀ ନଦୀରେ ସ୍ନାନ ତର୍ପଣ କରୁଥିବା ସମୟରେ ଏକ ଅଦ୍ଭୁତ ଦୃଶ୍ୟ ଦେଖି ସ୍ତବ୍ଧ ହୋଇଗଲେ। ଏକ ଭୋକିଲା ସିଂହ ଏକ ଗର୍ଭବତୀ ହରିଣୀକୁ ଭକ୍ଷଣ କରିବାକୁ ଇଚ୍ଛାକରି ତା'ର ପଶ୍ଚାତ୍‌ଧାବନ କରୁଥିଲା। ଗର୍ଭବତୀ ନିରୀହା ହରିଣୀଟି ବିକଳରେ ନିଜର ଗର୍ଭସ୍ଥ ସନ୍ତାନର ରକ୍ଷାପାଇଁ ଗଣ୍ଡୁକୀ ନଦୀର ଆର କୂଳକୁ ଲମ୍ଫ ଦେଇ ଅପର କୂଳରେ ନିପତିତ ହୋଇ ପ୍ରାଣ ବିସର୍ଜନ କରିଥିଲା; କିନ୍ତୁ ତା'ର ଗର୍ଭସ୍ଥ ସନ୍ତାନ ଜଳସ୍ରୋତରେ ଭାସିଯାଉଥିବା ସମୟରେ ତା'ର କରୁଣ କ୍ରନ୍ଦନରେ ରାଜର୍ଷି ମହର୍ଷିଙ୍କ ମନରେ ଅହେତୁକ ଦୟା, ସ୍ନେହ ଭାବ ଉଦ୍ରେକ ହେଲା। ସେ କାଳବିଳମ୍ବ ନ କରି ଜଳସ୍ରୋତରୁ ନବଜାତ ମୃଗଶିଶୁକୁ ଉଦ୍ଧାର କରି ନିଜ ଆଶ୍ରମରେ ଅତି ଯତ୍ନରେ ଲାଳନପାଳନ କରିଥିଲେ। ତାଙ୍କ ଯତ୍ନରେ ମୃଗ ଶିଶୁଟି କ୍ରମେ ବଢ଼ିବାକୁ ଲାଗିଲା। ମୃଗ ଶିଶୁଟି ଯେତେ ବଡ଼ ହେବାକୁ ଲାଗିଲା, ମହାରାଜା ଭରତଙ୍କ ତା'ପ୍ରତି ମୋହମମତା ବଢ଼ିବାକୁ ଲାଗିଲା। ଏପରିକି ସେ କ୍ଷଣେ ମୃଗଶିଶୁକୁ ନ ଦେଖିଲେ ଅଥୟ ହେଉଥିଲେ। ଯେ ନିଜର ସମସ୍ତ ସାମ୍ରାଜ୍ୟ, ବଂଶମର୍ଯ୍ୟାଦା, କୁଳଶୀଳ, ଧନରତ୍ନ ଇତ୍ୟାଦି ତ୍ୟାଗକରି ନିର୍ଜନ ବନ ମଧ୍ୟରେ ଋଷି ଜୀବନଯାପନ କରି ସକଳ ସାଂସାରିକ ଜୀବନର ବହୁ ଊର୍ଦ୍ଧ୍ୱରେ ରହି ପରମ ଶାନ୍ତିପ୍ରାପ୍ତ ହୋଇଥିଲେ, ସେହି ରାଜର୍ଷି, ମହାନ୍ ତପସ୍ୱୀ ପ୍ରଭୁଭକ୍ତ ଏକ ମୃଗଶିଶୁର ମୋହରେ ପଡ଼ି ଅଥୟ ହେବା ନିହାତି ଅବାସ୍ତବ।

ଥରେ ମୃଗଶିଶୁକୁ ନ ଦେଖି ମହାରାଜା ଭରତ 'ମୃଗ ମୃଗ' ଯେତେ ଡାକିଲେ ସେ ମୃଗଶିଶୁ ନ ଫେରିବାରୁ ସେହି ମୃଗକୁ ସ୍ମରଣ କରି ମହାରାଜା ଦେହତ୍ୟାଗ କଲେ। ଶେଷ ମୁହୂର୍ତ୍ତରେ ମୃଗ କଥା ମନ ମଧ୍ୟରେ ସ୍ଥାନ ଦେଇଥିବାରୁ ସେ ମୃଗ ହୋଇ ପରଜନ୍ମରେ ଜନ୍ମଗ୍ରହଣ କଲେ; କିନ୍ତୁ ମୃଗ ଦେହଧାରୀ ହୋଇ ମଧ୍ୟ ସେ ତାଙ୍କର ପୂର୍ବଜନ୍ମର ତପଃ ବଳରେ ପ୍ରଭୁ ନାମ ସ୍ମରଣ ଭୁଲି ପାରି ନ ଥିଲେ। ସେହି ମୃଗ ଦେହଧାରୀ ରାଜର୍ଷି ଭରତ ନିଜର ଉତ୍ତମ କର୍ମଦ୍ୱାରା ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ। ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରି ମଧ୍ୟ ସେ ପିତାଙ୍କ କୁଳକର୍ମର ଧାର ନ ଧରିବାରୁ ପିତା ଅତିଶୟ ମ୍ରିୟମାଣ ହୋଇ ଭରତଙ୍କୁ ଅନ୍ୟ ଭାଇମାନଙ୍କ ସହ ମିଶି ବ୍ରାହ୍ମଣମାନଙ୍କ କାର୍ଯ୍ୟରେ

ମନୋନିବେଶ କରିବାକୁ ଚାହିଁଥିଲେ । ମହାରାଜ ଭରତଙ୍କର ପୂର୍ବଜନ୍ମର ତପୋବଳ ଉଚ୍ଚଧରଣର ଥିଲା । ସେ କୌଣସି କାର୍ଯ୍ୟରେ ଚିତ୍ତ ନ ଦେଇ କେବଳ ସେହି ପରମପୁରୁଷ, ଯୋଗୀଜନପ୍ରାଣ, ସକଳ ପ୍ରାଣୀର ମୂଳାଧାର ପ୍ରଭୁ ନାରାୟଣଙ୍କ ପାଦପଦ୍ମରେ ମନୋନିବେଶ କରି ପାଗଳପ୍ରାୟ ହେଲେ । ଯାହା ଯେଉଁଠି ମିଳିଲା, ଭୋଜନ କଲେ, ନଚେତ୍ ନାହିଁ । କାହାସଙ୍ଗେ ବିଶେଷ କଥାବାର୍ତ୍ତା ନ ହୋଇ ପ୍ରଭୁ ନାମ ଭଜନକୀର୍ତ୍ତନ ଧ୍ୟାନ ଧାରଣାରେ ମନ ଦେଇ ନିର୍ବିକାର ହୋଇ କାଳାତିପାତ କଲେ ।

କ୍ରମେ ତାଙ୍କର ଜନ୍ମିତ ମାତା ଓ ପିତାଙ୍କ ଦେହାବସାନ ପରେ ସେ ନିଜର ଭାଇମାନଙ୍କ ସହିତ ରହିଥିଲେ । ତାଙ୍କର ଏପରି ଜଡ଼ ଭାବ ଦେଖି ଭାଇମାନେ ତାଙ୍କୁ 'ଜଡ଼ଭରତ' ବୋଲି କହି ଛାଡ଼ି ଚାଲିଗଲେ । ଜଡ଼ଭରତ ବିଷ୍ଣୁଭକ୍ତ ନାମରେ ଖ୍ୟାତ ହୋଇ ଗୋଟିଏ ସ୍ଥାନରେ ପଡ଼ିରହି ପ୍ରଭୁନାମ ଜପତପ କରି ଆତ୍ମତୃପ୍ତି ଲାଭ କଲେ । ଯେ ବିଷ୍ଣୁଭକ୍ତ, ଯାହାଙ୍କ ଉପରେ ପ୍ରଭୁ ଦୟାମୟ ନାରାୟଣଙ୍କ କୃପା ଦୃଷ୍ଟି ପତିତ ହୋଇଛି, ଯେ ସଂସାରର ସବୁ ମାୟାଜଞ୍ଜାଳ, ଦୁଃଖସୁଖ ଭଗବାନଙ୍କ ଶ୍ରୀପୟରେ ବିସର୍ଜନ କରି ପରମ ଆତ୍ମତୃପ୍ତି ଲାଭ କରି ପରମାନନ୍ଦଙ୍କ ଠାରେ ଚିତ୍ତ ନିମଗ୍ନ କରିଛନ୍ତି-- ତାଙ୍କଠାରେ ପରଆପଣା ନିନ୍ଦା, ଅପବାଦ, ଭୋକଶୋଷ, ନିଦ୍ରା-ଜାଗ୍ରତର ମାନେ କିଛି ନ ଥାଏ । ସେହି ଜଡ଼ଭରତ ମହାରାଜା ଗୋଟିଏ ସ୍ଥାନରେ ବସି ଧ୍ୟାନମଗ୍ନ ଥା'ନ୍ତି । ତାଙ୍କୁ ଭିକ୍ଷୁକ ମନେକରି ବା ପାଗଳ ମନେକରି ପିଲାମାନେ ନାନା କୁବାକ୍ୟ କହି ଟାହିଟାପରା, ଗାଳିଗୁଲଜ କଲେ ମଧ୍ୟ ତାହା ଜଡ଼ଭରତଙ୍କ ଉପରେ କୌଣସି ପ୍ରଭାବ ପକାଉ ନ ଥିଲା । ତାଙ୍କର ଏପରି ଭାବ ଦେଖି କିଛି ବ୍ୟକ୍ତି ତାଙ୍କୁ ବିଲବାଡ଼ିରେ ଚାଷ କାର୍ଯ୍ୟରେ ଓ ଗୃହ ନିର୍ମାଣ କାର୍ଯ୍ୟରେ ଲଗାଇ ଅକ୍ଳାନ୍ତ ପରିଶ୍ରମ କରାଇଲେ ମଧ୍ୟ ତାଙ୍କୁ କିଛି ପାରିଶ୍ରମିକ ନ ନେଇ କେବଳ ଯାହିତାହି କିଛି ଖାଦ୍ୟ ଦେଇ ଦେଉଥିଲେ । ସେହିଥିରେ ଜଡ଼ଭରତଙ୍କର ଆନନ୍ଦ । ତାଙ୍କର ସାଙ୍ଗସାଥୀ, ପ୍ରିୟ ପରିଜନ, ବନ୍ଧୁକୁଟୁମ୍ବ, ଆତ୍ମୀୟସ୍ୱଜନ କେହି ରହିଲେ ନାହିଁ । ତାଙ୍କର ମଧ୍ୟ ଏମାନଙ୍କ ପ୍ରତି ଆଦୌ ଆସକ୍ତିଭାବ ରହିଲା ନାହିଁ ।

ଦିନେ ଭରତ ମହାରାଜା ଏକ ସ୍ଥାନରେ ମଳିନ ବସ୍ତ୍ର ପରିହିତ, ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ଦୁଃଖୀଦରିଦ୍ରଙ୍କ ପରି ଉପବେଶନ କରି ପ୍ରଭୁ ନାମ ଜପ କରୁଥା'ନ୍ତି, ଏହି ସମୟରେ ଏକ କୁପ୍ରକୃତିର ବଳଶାଳୀ, ଅସାମାଜିକ ବ୍ୟକ୍ତି ପୁତ୍ରଲାଭ ଲାଳସାରେ ଜଡ଼ଭରତଙ୍କୁ ଜୋରଜବରଦସ୍ତ ଧରି ନେଇ ମା' ଭଦ୍ରକାଳୀଙ୍କ ପାଖରେ ବଳି ପାଇଁ ନେବା ସମୟରେ ଜଡ଼ଭରତ କେବଳ



'ଶ୍ରୀବିଷ୍ଣୁ' ନାମ ଜପରେ ବ୍ୟସ୍ତ ରହିଥା'ନ୍ତି । ତାଙ୍କ ଶରୀରର ତେଜ ଶତଗୁଣ ବିକଶିତ ହେଲା ଓ ତାଙ୍କ ଶରୀରର ଅଲୌକିକ ତେଜରେ ମାଆ ଭଦ୍ରକାଳୀ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ସେ ନିଜେ ପ୍ରକଟିତ ହୋଇ ଜଣେ ବିଷ୍ଣୁଭକ୍ତଙ୍କୁ ତାଙ୍କ ନିକଟରେ ବଳି ଦେବାପାଇଁ ଆଣିଥିବା ଜାଣି, କ୍ରୋଧିତ ହୋଇ ସେହି ବଳିଦାତାଙ୍କୁ ନିଜ ଅସ୍ତ୍ରଦ୍ୱାରା ଶିରଚ୍ଛେଦ କରି ଜଡ଼ଭରତ ମହାରାଜାଙ୍କୁ ମୁକ୍ତ କରିଥିଲେ । ମାଆଙ୍କ କରସ୍ପର୍ଶରେ ଭରତ ମହାରାଜାଙ୍କ ଶରୀର ପୁଲକିତ ହେବାକୁ ଲାଗିଲା । ମାଆଙ୍କ କୃପା ଯୋଗୁ ମାଆଙ୍କୁ ଶତ ପ୍ରଣିପାତପୂର୍ବକ ପୁଣି ପ୍ରଭୁ ନାମରେ ନିଜକୁ ହଜାଇଦେଲେ । ବିଷ୍ଣୁ ଭକ୍ତଙ୍କ ଉପରେ କେବେ ବିପଦ ପଡ଼ିପାରେ ? ସବୁବେଳେ ଭଗବାନ କହିଥା'ନ୍ତି ଯେ- ସେ ବୈକୁଣ୍ଠ କିମ୍ବା ଯୋଗୀଜନ ହୃଦୟରେ ନ ଥା'ନ୍ତି । ତାଙ୍କ ଭକ୍ତ ଯେଉଁଠି ତାଙ୍କ ନାମ ଭଜନ କରୁଥା'ନ୍ତି, ସେ ସେହି ଭକ୍ତ ପାଖେ ପାଖେ ରହି ଭକ୍ତକୁ ରକ୍ଷା କରିଥା'ନ୍ତି । ଏହିପରି ଭାବରେ ମହାରାଜ ଭରତ ବିଭୁକୃପା ଲାଭକରି ଜ୍ଞାନର ପ୍ରଦୀପ ଦ୍ୱାରା ଅଜ୍ଞାନୀଙ୍କୁ ଜ୍ଞାନାଲୋକରେ ଉଦ୍‌ଭାସିତ କରି ପରମ ତୃପ୍ତି ଲାଭ କରୁଥିଲେ ।

ଥରେ ସିନ୍ଧୁ ଦେଶର ରାଜା ଏକ ସବାରୀରେ ମହାମୁନି କପିଳଙ୍କ ଆଶ୍ରମକୁ ଯାଉଥିଲେ । ଯେଉଁଠି ଜଡ଼ଭରତ ଉପବେଶନ କରିଥିଲେ, ସେହି ପଥରେ ପ୍ରବେଶ କରନ୍ତେ, ଆଉ ଜଣେ ବାହକର ଆବଶ୍ୟକତା ପଡ଼ିବାରୁ ଜଡ଼ଭରତଙ୍କୁ ନେଇ ସବାରୀ ବାହକ ରୂପେ ବ୍ୟବହାର କରିଥିଲେ । ସବାରୀ କାନ୍ଧରେ ଥିବା ସମୟରେ ତାଙ୍କ ଶରୀରରେ ଆତ୍ମଜ୍ଞାନର ପ୍ରଭାବରେ ବିଚଳିତ ହେବା ଏବଂ ସେ ଦେହାତୀତ ହେବାରୁ ସବାରୀ ଆନ୍ଦୋଳିତ ହେବା ଦେଖି ନିଜେ ସିନ୍ଧୁ ମହାରାଜା ତାଙ୍କୁ ତିରସ୍କାର କରି କହିଲେ, "ତୁମେ ବୃଦ୍ଧ ହୋଇଛ, ବଳ ନାହିଁ, ତୁମର ବୁଦ୍ଧିବିବେକ ନାହିଁ । ନୋହିଲେ ତୁମର ପ୍ରଭୁଙ୍କ ସବାରୀ ବାହକ ରୂପେ ତୁମର କର୍ତ୍ତବ୍ୟରେ ଅବହେଳା କରନ୍ତ ନାହିଁ ।" ରାଜାଙ୍କ ଏହି ତିରସ୍କାର ବାଣୀରେ ଜଡ଼ଭରତ ତିଳେମାତ୍ର ବିଚଳିତ ନ ହୋଇ ଯେଉଁ ତତ୍ତ୍ୱଜ୍ଞାନ ଶୁଣାଇଲେ, ସିନ୍ଧୁରାଜା ଆଶ୍ଚର୍ଯ୍ୟ ହୋଇ ଭାବିଲେ-- ଏ ପରମ ଭକ୍ତ କିଏ ? ଏହାଙ୍କ ତେଜରେ ସାରା ପୃଥିବୀ ତେଜୀୟାନ୍, ଏହାଙ୍କ ବାଣୀରେ ଶତଅମୃତ ବର୍ଷଣ ହେଉଛି । ଏହାଙ୍କ ରୂପ କୋଟିସୂର୍ଯ୍ୟ ପ୍ରଭା ସଙ୍ଗେ ସମାନ । ଏ ମହାରାଜା ତପସ୍ୱୀ ସାମାନ୍ୟ ମଣିଷ ନୁହଁନ୍ତ ଭାବି ନିଜେ ସବାରୀରୁ ଓହ୍ଲାଇ ଜଡ଼ଭରତଙ୍କ ଚରଣ ତଳେ କ୍ଷମାଭିକ୍ଷା କଲେ । ନିର୍ବିକାର ଚିତ୍ତରେ ଭରତ ମହାରାଜା କହିବାକୁ ଲାଗିଲେ, "କ୍ଷମା ଦେବାକୁ ମୁଁ କିଏ ? ଯିଏ ସଂସାର ଆତଜାତ କରୁଛି, ଯାହାର ପ୍ରଭାବରେ ଇନ୍ଦ୍ର, ସୂର୍ଯ୍ୟ, ଚନ୍ଦ୍ର, ବରୁଣ, କୁବେର ଆଦି ଦେବତାଗଣ ପରିଚାଳିତ, ସେଇ ଗୋଲକ-ବିହାରୀ, ବ୍ରହ୍ମାଣ୍ଡପତି କରୁଣାମୟ, ଅନ୍ତର୍ଯ୍ୟାମୀ ପ୍ରଭୁ ଭଗବାନ୍ ନାରାୟଣଙ୍କ ଠାରେ ସବୁ ଅର୍ପଣ କଲେ, ସେ ଶାନ୍ତି ପରମତୃପ୍ତି ପ୍ରଦାନ କରି ତୁମକୁ ପରମାନନ୍ଦରେ ହଜାଇ ତୁମର ମାନବ ଜୀବନ ଧନ୍ୟ କରିଦେବେ ।"

ଭରତ ମହାରାଜାଙ୍କ ଠାରୁ ଏପରି ମହାଜ୍ଞାନ ଲାଭକରି ସେ ଜଡ଼ଭରତଙ୍କ ଶିଷ୍ୟ ଭାବରେ ପ୍ରଭୁ କରୁଣାର ପାତ୍ର ହୋଇ ଜୀବନକୁ ଧନ୍ୟ କରିବାକୁ ଲାଗିଲେ ।

କାଳକ୍ରମେ ଜଡ଼ଭରତ ପ୍ରଭୁ ନାମ ଜପୁ ଜପୁ ନାରାୟଣଙ୍କଠାରେ ଲୀନ ହୋଇ ପରମଗତି ପ୍ରାପ୍ତ ହୋଇଥିଲେ ।

*ଝାଞ୍ଜିରିମଙ୍ଗଳା, କଟକ-୭୫୩୦୦୯*

# ନାଁଟି ମୋର ଦୂବ

ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି



ଦୂବଟିଏ ମୁହିଁ ଛୋଟିଆ ତୃଣଟି ମାଟିରେ ମମତା ବେଶି
ମାଟିରେ ଜନମି ଖେଳେ ମୁଁ ମାଟିରେ ଲୋଟୁଥାଏ ହସ ହସି ।
କିଏ କହେ ମୋତେ ଅଦରକାରୀ ତ କିଏ କହେ ଦରକାରୀ
କାହା କହିବାକୁ ଖାତର ନ କରି ନିଜ କାମ ଯାଏ କରି ।
ମାଟିକୁ ଜାବୁଡ଼ି ମାଡ଼ିଯାଏ ବୋଲି ମାଟି କ୍ଷୟରୁ ବଞ୍ଚାଏ
ଚାଷୀଭାଇ ମୋତେ ଅଜରା କହିଣ ଓପାଡ଼ି ଫୋପାଡ଼ି ଦିଏ ।
ଖଡ଼ିଛୁଆଁଠାରୁ ଦେବପୂଜାବେଳେ ଆଗ ଲୋଡ଼ା ଦୂର୍ବାଦଳ
ଗୋ'ମାତାର ଅତି ପ୍ରିୟ ଆହାର ମୁଁ ଭରିଦିଏ ଦେହେ ବଳ ।
କଅଁଳିଆ ଶେଯ ସବୁଜ ଗାଲିଚା ଭରା ଓଉଷଧି ଗୁଣ,
ଜାଣିଥିବ ବୋଧେ ଯିଏ ଜାଣିନାହିଁ କହୁଛି ପିଲାଏ ଶୁଣ ।
ଦୂବରସ ସଙ୍ଗେ ମିଶିରି ଖାଇଲେ ରକ୍ତ ଆମାଶୟ ନାଶ
ରକ୍ତ ବାନ୍ତି ପାଇଁ ଛେଳି କ୍ଷୀର ସହ ଲୋଡ଼ା ହୁଏ ଦୁବରସ ।
ଗ୍ରୀଷମ ଦିନରେ ପ୍ରଖର ଖରାରେ ନାକରୁ ଝରେ ରକତ
ଫିଟିକରି ଗୁଣ୍ଡ ମିଶା ଦୂବରସେ ମୁକତି ମିଳେ ତ୍ୱରିତ ।
ଝୁଣ୍ଟି ପଡ଼ିଲେ ବା କାଟି ହୋଇଯାଇ ରକତ ବୋହିବ ଯଦି
କଅଁଳିଆ ଦୂବ ଧୋଇଧାଇ ଛେଚି କ୍ଷତ ସ୍ଥାନେ ଦିଅ ଲଦି ।
ରାଶିତେଲ ଆଉ ଦୂବରସ ଫେଣ୍ଟି ଦେହରେ ମାଲିସ କର,
ଶରୀର ଚିକ୍କଣ ନିରୋଗ ହୋଇବ ଚର୍ମରୋଗ ହେବ ଦୂର ।
ଛୋଟ ମୋର ଦେହ ଛୋଟିଆ ଜୀବନ ଛୋଟ ନୁହେଁ ମୋର ଭାବ,
ଜନ ଉପକାର ବ୍ରତ ମୁଁ କରିଛି ନାଆଁଟି ମୋହର ଦୂବ ।



ବଣିଆପାଟ, ଶିରିପୁର ରୋଡ, କେନ୍ଦୁଝରଗଡ଼- ୭୫୮୦୦୧

# ମାଲ୍‌ୟେସିଆ ଯାତ୍ରା-୨

ଡା. ସୁଦର୍ଶନ ପଟ୍ଟନାୟକ

ତା'ପରେ ଆମ ଯାନ ଯାଇ କିଛିସମୟ ପାଇଁ ଏକ ବିଶ୍ୱବିଦ୍ୟାଳୟ ପରିସରରେ ଅଟକିଲା । ଏ ବିଶ୍ୱବିଦ୍ୟାଳୟର ନାମ ହେଲା, 'ସାଇନା ଇସ୍‌ଲାମିଆ ମାଲୟେସିଆ ବିଶ୍ୱବିଦ୍ୟାଳୟ', ଗାଡ଼ିଜାମଦା-୧୦୧ ରିସର୍ଚ୍ଚ ସିଟି ।



ସେତେବେଳକୁ ମଧ୍ୟାହ୍ନଭୋଜନର ସମୟ । ଖୁବ୍ ବେଶି ଭୋକ ଲାଗୁ ନ ଥିଲେ ମଧ୍ୟ ଜୟପୁର ମହଲରେ ଆମେ ଆମର ମଧ୍ୟାହ୍ନଭୋଜନ କରିନେଲୁ । ଆଗରୁ କହିଛି ଜଳବାୟୁ କହନ୍ତୁ, ଦୈନନ୍ଦିନ ଜୀବନଚର୍ଯ୍ୟା କହନ୍ତୁ ଅବା ଲୋକମାନଙ୍କର ଆତିଥ୍ୟ ଓ ଅନୁଷ୍ଠାନଗୁଡ଼ିକର ନାମକରଣରେ ସେମାନେ ଆମ ଭାରତର କେତେକ ପ୍ରସିଦ୍ଧ ସ୍ଥାନ ଓ କୀର୍ତ୍ତିସମୂହର ନାମର ଅନୁକରଣରେ ସେଠାକାର ସ୍ଥାନଗୁଡ଼ିକୁ ନାମିତ କରିଛନ୍ତି । ଏଇ ଯେମିତି ଜୟପୁର ପ୍ୟାଲେସ୍ ଇତ୍ୟାଦି ।

ପରେ ପରେ ଆମର ଜେଣ୍ଟିଙ୍ଗ୍ ଦ୍ୱୀପ (Zenting Island) ଭ୍ରମଣ କରିବାର ଥାଏ ଓ ଆମେ ସମସ୍ତେ ପୁଣି ଯାନ ନିକଟରେ ଏକତ୍ର ହେଲୁ । ଜେଣ୍ଟିଙ୍ଗ୍ ଦ୍ୱୀପରେ ଆମେ ପ୍ରାୟ ଅପରାହ୍ଣ ୩ଟାରେ ଉପନୀତ ହେଲୁ । ସେ ସ୍ଥାନ, କେବୁଲକାର ଆରମ୍ଭ ସ୍ଥାନ ଥିଲା । ସେଠାରୁ ଆମକୁ ଜେଣ୍ଟିଙ୍ଗ୍ ପାର୍ବତ୍ୟାଞ୍ଚଳର ଆଶ୍ରୟସ୍ଥଳ (Hill Station Resort) ଯିବାକୁ ଥାଏ । ଆମର ସଂଯୋଜକ ଆବଶ୍ୟକ ହେଉଥିବା ଟିକେଟ୍ ଆମ ସମସ୍ତଙ୍କ ପାଇଁ କାଟି ଆଣିଲେ ଓ ଆମେ ଦଳ ଦଳ ହେଇ ପ୍ରାୟ ତିନି ଚାରୋଟି କେବୁଲ କାର୍‌ରେ ବସିଲୁ ।

କେବୁଲ୍ କାର୍‌ଗୁଡ଼ିକ ଗୋଟିଏ ଗୋଟିଏ ବିମାନ ପରି ନିର୍ମିତ । ପ୍ରତ୍ୟେକ ବିମାନରେ ଛଅଜଣ ବସିପାରିବେ । ଏଣୁ ଆମମାନଙ୍କୁ ଭିନ୍ନଭିନ୍ନ ବିମାନରେ ବସିବାକୁ ହେଲା । ଉକ୍ତ ସ୍ଥାନ ଏକ ଷ୍ଟେସନ୍ ଭଳି; ମାତ୍ର କେବୁଲ୍ ବିମାନଗୁଡ଼ିକ ସଦାସର୍ବଦା ଚଳମାନ । ସେହି ସ୍ଥାନରେ କେବଳ ଗତି ଧିମା କରାଯାଏ ଓ ଯାତ୍ରୀମାନେ ଅଧିରୂଢ଼ ହେଲାପରେ ତାହା ପୁଣି ତା'ର ଗନ୍ତବ୍ୟ ସ୍ଥାନକୁ ଗତି କରିଥାଏ । ଯାନଗୁଡ଼ିକ ଏକ ମୋଟା ବୈଦ୍ୟୁତିକ ଲୌହ ଦଉଡ଼ିରୁ ଝୁଲି ରହିଥାଏ । ବୈଦ୍ୟୁତିକ ସଂଯୋଗ ଫଳରେ ଦୁଇ ପାର୍ଶ୍ୱରେ ବିରାଟ ବିରାଟ ବୈଦ୍ୟୁତିକ ଉପଷ୍ଟେସନ ମାଧ୍ୟମରେ ବିଦ୍ୟୁତ୍ ସଂଯୋଗ କରାଯାଏ । ଦୁଇ ପାର୍ଶ୍ୱରେ ଦୁଇଟି ବିଶାଳ ଶକ୍ତିଶାଳୀ ଲୌହ ଚକ୍ର ଦ୍ୱାରା ସଂଯୋଜିତ ହେଇ ଉକ୍ତ ମୋଟା ଲୌହ ଦଉଡ଼ିକୁ ଘୂର୍ଣ୍ଣାୟମାନ ଅବସ୍ଥାରେ ରଖିଥାଏ । ଫଳରେ ତା' ସହ ସଂଯୁକ୍ତ ବିମାନଗୁଡ଼ିକ ଏକ ପରେ ଏକ ଉକ୍ତ ଦଉଡ଼ି ଉପରେ ସଂଯୋଗ ସ୍ଥଳରେ ଗଡ଼ି ଗଡ଼ି ଆଗେଇ ଯାଆନ୍ତି ।

ବିମାନଗୁଡ଼ିକ ଶୂନ୍ୟରେ ଭାସିଗଲା ଭଳି ଲାଗେ । ଯାଉଥିବା ଓ ଫେରୁଥିବା ବିମାନଗୁଡ଼ିକ ଯେଉଁ




ଲୌହ ଦଉଡ଼ିରେ ନିବଦ୍ଧିତ, ସେଗୁଡ଼ିକର ଦୂରତା ପ୍ରାୟ ଚାଳିଶ ପଚାଶ ଫୁଟ୍ ହେବ । ଏଣୁ ଯାଉଥିବା ଓ ଫେରୁଥିବା ଯାତ୍ରୀଗଣ ପରସ୍ପରକୁ ଦେଖିପାରନ୍ତି ।

ନିମ୍ନଭାଗ ଘନବୃକ୍ଷ ଘେରା ପାର୍ବତ୍ୟ ଅଞ୍ଚଳ । ତଳକୁ ଚାହିଁଲେ, ଅମାପ ଗହ୍ୱର ମନରେ ଭୀତି ସଞ୍ଚାର କରେ । ମୁଣ୍ଡ ଘୂରେଇ ଯାଏ । ଅନେକ ଯାତ୍ରୀ ଅହେତୁକ ବାନ୍ତି କରିଥାଆନ୍ତି । ଏଣୁ ବିମାନଗୁଡ଼ିକ ମଧ୍ୟରେ ବାନ୍ଧି ହୋଇ ବସିବା ପାଇଁ ବେଲ୍ଟର ବ୍ୟବସ୍ଥା ଥାଏ । ଯାତ୍ରା ଆରମ୍ଭରୁ ବିମାନରେ ଗତି କଲାଭଳି ନିମ୍ନଭାଗକୁ ନ ଚାହିଁବା ପାଇଁ ସତର୍କ କରେଇ ଦିଆଯାଇଥାଏ । ସେ ଯାହାହେଉ ଆମମାନଙ୍କର ବିମାନ ଜେଣ୍ଟିଙ୍ଗ୍ ପାର୍ବତ୍ୟ ଆଶ୍ରୟସ୍ଥଳ ପ୍ରାୟ ଅପରାହ୍ଣ ୩ଟା ସୁଦ୍ଧା ପହଞ୍ଚିଗଲା ।

ଜେଣ୍ଟିଙ୍ଗ୍ ଦ୍ୱୀପରେ ଆମର ଦୁଇଦିନ ରହିବାର ଥିଲା । ଆମେ ଗୋଟିଏ ହୋଟେଲ୍‌ରେ ରହିବା କଥା ନିର୍ଦ୍ଦିଷ୍ଟ କରାଯାଇଥିଲା । ସେ ହୋଟେଲର ନାମ ଥିଲା 'ଫାଷ୍ଟ ୱାର୍ଲ୍ଡ ହୋଟେଲ୍' । କେବୁଲ କାର୍‌ରୁ ଓହ୍ଲାଇଲା ମାତ୍ରେ ତା'ର ଷ୍ଟେସନ୍ ସଂଲଗ୍ନ ବଜାରଟିଏ ଅଛି । ସେ ସ୍ଥାନଟି ଏତେ ଉଚ୍ଚରେ ଯେ ସେଠାରେ ଠିଆହୋଇ ଚତୁର୍ଦ୍ଦିଗକୁ ଦୃଷ୍ଟି ନିକ୍ଷେପ କଲେ ମାଲେୟେସିଆର ବହୁଗୁଡ଼ିଏ ରମଣୀୟ ସ୍ଥାନ ଦୃଷ୍ଟିଗୋଚର ହୁଏ । ତାହା ଏକ ପର୍ଯ୍ୟବେକ୍ଷଣ ଟାପୁ ଭଳି କାର୍ଯ୍ୟ କରେ । ପ୍ରାୟ ଏକଘଣ୍ଟା ଖଣ୍ଡେ ସେଠାରେ ଅତିବାହିତ କରି ଆମର ନିର୍ଦ୍ଦିଷ୍ଟ ହେଇଥିବା ହୋଟେଲ, ଫାଷ୍ଟ ୱାର୍ଲ୍ଡ ହୋଟେଲକୁ ଚାଲିଗଲୁ । ସେଠାରେ ଧୁଆଧୋଇ ଓ ନିତ୍ୟକର୍ମ ସମାପନ କରି କିଛି ସ୍ନାକ୍ସ ଓ ଚା' ପାନ ପରେ ଆମର ଭ୍ରମଣସୂଚୀ ଅନୁସାରେ ଆମେ ସେଠାରେ ଥିବା ଜେଣ୍ଟିଙ୍ଗ୍ ଆମୋଦ କେନ୍ଦ୍ର (Zenting Entertainment Centre) କୁ ଗଲୁ ।

ସେଠାରେ ଏକ 'ଜୁଆ' ଖେଳର ଫୁଆରା ଲାଗିଥିଲା । ସେଥିପାଇଁ ଆମକୁ ଟିକେଟ୍ କରିବାକୁ ପଡ଼ିଲା । ଟିକେଟର ଦାମ ଜଣକ ପିଛା ୮୫ ରିଙ୍ଗିଟ୍ (ମାଲେୟେସିଆ ମୁଦ୍ରା ବା ଚଳନ୍ତି ବିନିମୟ ଅର୍ଥ) ଦେଇ ସମସ୍ତଙ୍କ ପାଇଁ ଟିକେଟ୍ ସଂଯୋଜକ କିଣିଆଣିଲେ । ଟିକେଟର ମୂଲ୍ୟ ଭାରତୀୟ ବିନିମୟ ରାଶି ହେବ ୧୫୩୦ ଟଙ୍କା । କାରଣ ସେଠାକାର ଏକ ରିଙ୍ଗିଟ୍‌ର ଭାରତୀୟ ମୂଲ୍ୟ ରାଶି ହେଉଛି ୧୮ ଟଙ୍କା ।

ରଙ୍ଗବେରଙ୍ଗର ଆଲୋକସଜ୍ଜା ସହ ପ୍ରଚୁର ଆଲୋକମାଳା ସେ ସ୍ଥାନକୁ ଇନ୍ଦ୍ରଭୁବନରେ ପରିଣତ କରିଥାଏ । ଭିତରକୁ ପ୍ରବେଶ କଲାପରେ ଅନୁଭବ

ଆସିଲା ଯେ, ଏଭଳି ଏକ ରମଣୀୟ ଦର୍ଶନୀୟ ଓ ଉପଭୋଗ୍ୟ ସ୍ଥାନ ଦର୍ଶନ କରିବାର ସୁଯୋଗ ମିଳିଲା ।

ଆମୋଦପ୍ରମୋଦ ପ୍ରଦର୍ଶନ କରୁଥିବା କଳାକାରମାନେ ଅତି ଶୃଙ୍ଖଳିତ ଭାବରେ, ସମୟ ନିର୍ଘଣ୍ଟ ଅନୁସାରେ ସେମାନଙ୍କ କଳାନୈପୁଣ୍ୟ ପ୍ରଦର୍ଶନ କରି ଆମମାନଙ୍କୁ ମନ୍ତ୍ରମୁଗ୍ଧ କରିଦେଲେ । ଦୀର୍ଘ ୮୦ମିନିଟ୍ ଧରି ଆମେ ଆମର ବାହ୍ୟ ଜଗତରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହେଇ ଯାଇଥିଲୁ । ଏକ ଅଭିନବ ନୂତନ ଆମୋଦ ପ୍ରମୋଦପୂର୍ଣ୍ଣ ଜଗତରେ ସତେଯେପରି ବିଚରଣ କରୁଥିଲୁ ! ଏପରିକି ଆମେ ଆମର ଅସ୍ତିତ୍ୱ ବିଷୟରେ ବିସ୍ମୃତ ହେଇଯାଇଥିଲୁ ।

ଏହା ଏକ ଉନ୍ନତ ସର୍କସର କାର୍ଯ୍ୟକଳାପ ଭଳି । ଏଠାରେ କହି ରଖିବାକୁ ଚାହେଁ ଯେ କଳାକାରମାନଙ୍କର ଅଭିନୟ, କଳାଚାତୁର୍ଯ୍ୟ ତ ନିଖୁଣ ଥିଲା, ବାଛିବାର ନାହିଁ । ଏତଦ୍‌ବ୍ୟତୀତ ସେମାନଙ୍କର ସରକାରଙ୍କ ଅବା ଶାସନର ଆନ୍ତରିକତା ଓ ପ୍ରୋତ୍ସାହନର ପଟାନ୍ତର ନାହିଁ । ଏହିଭଳି ରମ୍ୟ, ହୃଦୟଗ୍ରାହୀ, ମନୋରଞ୍ଜନଧର୍ମୀ କଳାପ୍ରଦର୍ଶନ ମାଧ୍ୟମରେ ସେମାନେ ଅମାପ ବୈଦେଶିକ ମୁଦ୍ରା ଉପାର୍ଜନ କରୁଛନ୍ତି । ଫଳରେ ବ୍ୟକ୍ତିଗତ ଭାବେ କଳାକାରମାନେ ସେମାନଙ୍କର ଆର୍ଥିକ ମାନଦଣ୍ଡ ବୃଦ୍ଧି କରିବା ସହ ସରକାର ବା ଶାସନର ମଧ୍ୟ ଆର୍ଥିକ ମାନଦଣ୍ଡ ସୁଦୃଢ଼ କରିବାରେ ସାହାଯ୍ୟ କରୁଛନ୍ତି । ଶୁଣିଲି, ବିଦେଶୀ ପରିଭ୍ରମଣକାରୀଙ୍କ ଯୋଗୁଁ ହିଁ ତାଙ୍କର ଦେଶର ଆର୍ଥିକ ମାନଦଣ୍ଡର ବହୁଳାଂଶ ପ୍ରଭାବିତ ହୁଏ । ଦେଶର ମୋଟ ବାର୍ଷିକ ଆୟର ଏକ ବିପୁଳ ଅଂଶ ଏହି ପରିଭ୍ରମଣ ଶିଳ୍ପୋଦ୍ୟୋଗରୁ ହିଁ ମିଳିଥାଏ ।

କଳା ପ୍ରଦର୍ଶନ ଅତୀବ ମନୋରମ, ଆଶ୍ଚର୍ଯ୍ୟଜନକ ଓ ଭୀତିସଞ୍ଚାରକ । ସମସ୍ତ କଳାକାରଗଣ ପାଦରେ ଚାଲୁ ନ ଥାନ୍ତି । ସେମାନଙ୍କର ଚଳପ୍ରଚଳ କେବଳ ସ୍କେଟିଂ ମାଧ୍ୟମରେ ହିଁ ସଂଘଟିତ ହେଉଥିଲା । ସ୍କେଟିଂ ନୃତ୍ୟ, ହାସ୍ୟଉଦ୍ଦୀପକ ପରିହାସକାରୀଙ୍କର ମନୋରଞ୍ଜନଧର୍ମୀ ପ୍ରଦର୍ଶନ ସହ ମ୍ୟାଜିକ୍ ଇତ୍ୟାଦି ପ୍ରଦର୍ଶନ ସମୟର ପ୍ରତ୍ୟେକ ମୁହୂର୍ତ୍ତକୁ ରୋମାଞ୍ଚକର, ହୃଦ୍‌ସ୍ପନ୍ଦନକାରୀ ଓ ଭୀତି ସଞ୍ଚାରକ କରି ଦେଉଥିଲା । ବିଶ୍ୱାସ ହେଉ ନ ଥିଲା ସତେ କ'ଣ ଏହା ମାନବୀୟ ଶକ୍ତିସାମର୍ଥ୍ୟରେ ସମ୍ଭବ ! ଆମେ କ'ଣ ଅନ୍ୟ ଏକ ବିସ୍ମୟ ଜଗତରେ ଘୂରିବୁଲୁ ନାହୁଁ ତ ! ନା ! ତା' ଥିଲା ଅତ୍ୟନ୍ତ ମାନବୀୟ ଓ ବାସ୍ତବ; କିନ୍ତୁ ରୋମାଞ୍ଚକର ଓ ଦୀର୍ଘଶ୍ୱାସଗ୍ରାହୀ । ପ୍ରତ୍ୟେକଟି ପ୍ରଦର୍ଶନ ଏକୁ ଆରେକ ଥିଲା ।

ଦିନସାରା ବୁଲିବୁଲି ଅତ୍ୟନ୍ତ କ୍ଳାନ୍ତ ହୋଇପଡ଼ିଥିଲି । ତା'ଛଡ଼ା ମୋ'ବୟସ ଦୃଷ୍ଟିର ମୁଁ ପ୍ରାୟ ସମସ୍ତ ସଭ୍ୟଙ୍କଠାରୁ ବରିଷ୍ଠ ଥିଲି । ସମସ୍ତଙ୍କ ସହ ସମାନ ଭାବେ ପରିଶ୍ରମ କରୁଥିଲି । ଏଣୁ ଟିକେ ଅଧିକ କ୍ଳାନ୍ତ ହୋଇପଡୁଥିଲି । ହେଲେ, ଯେତେଦୂର ସମ୍ଭବ ସେ କ୍ଳାନ୍ତି ମୁଁ ଅନ୍ତରରେ ହିଁ ରଖୁଥିଲି । ଭୋର୍ ୫ଟା ବେଳକୁ ମୋ' ନିଦ ଭାଙ୍ଗିଲା । ତତ୍ତ୍ୱାବଧାରକ ଜଣେ ଯୁବକ । ସେ ତଥାପି ଶୋଇଥାଆନ୍ତି । ମୁଁ ଏହା ଭିତରେ ସମସ୍ତ ନିତ୍ୟକର୍ମ ସାରି ପରଦିନର ଭ୍ରମଣ ପାଇଁ ପ୍ରସ୍ତୁତ ହେଇଗଲି ଓ ଅନ୍ୟ ସାଥୀମାନଙ୍କ ସହ ସକାଳର ଜଳଖିଆ ପାଇଁ ଉଦ୍ଦିଷ୍ଟ କକ୍ଷକୁ ଗଲି ।

ଭୋଜନ କକ୍ଷଟି ବିଶାଳ । ଧାଡ଼ିଧାଡ଼ି ହୋଇ ଲମ୍ୱା ଲମ୍ୱା ଟେବୁଲ୍ ଉପରେ ନିରାମିଷ ଓ ଆମିଷର ଭିନ୍ନଭିନ୍ନ ବ୍ୟଞ୍ଜନ ବ୍ୟଞ୍ଜନଦାନିରେ ପରଶା ଯାଇ

ରହିଥାଏ । ପ୍ରତ୍ୟେକଙ୍କୁ ନିଜେ ନିଜେ ତହିଁରୁ ଆଣି ନିଜ ପ୍ଲେଟ୍‌ରେ ରଖିବାକୁ ହୁଏ । ବିଭିନ୍ନ ପ୍ରକାର ଫଳରସ, ଚା' କଫି ଓ ତାହା ପୁଣି ଚିନି ବିନା ମଧୁମେହ ରୋଗୀମାନଙ୍କ ପାଇଁ ଓ ମିଠାସହ ସାଧାରଣ ବ୍ୟକ୍ତିମାନଙ୍କ ପାଇଁ ।

ଦେଖିବାର କଥା ଯେ ଯେକୌଣସି ବ୍ୟକ୍ତି ତାକୁ ଭଲଲାଗୁଥିବା ଖାଦ୍ୟ ଯେତେ ଇଚ୍ଛା ସେତେ ଖାଇ ପାରିବ । ତହିଁରେ ବାଧକତା ନ ଥାଏ । ପ୍ରଚୁର ପରିମାଣରେ ଯୋଗାଣ ମଧ୍ୟ ଅବ୍ୟାହତ ଥାଏ । ତା' ମଧ୍ୟରେ ପୁଣି ବିଭିନ୍ନ ଦେଶର ରୁଚି ନେଇ ଖାଦ୍ୟ ଥାଏ, ଯଥା– ଭାରତୀୟ, ମହାଦେଶୀୟ, ସ୍ପେନୀୟ, ଥାଇ ଦେଶର ଖାଦ୍ୟ, ଜାପାନୀମାନଙ୍କର, ଚୀନ ଦେଶର ଖାଦ୍ୟ ଇତ୍ୟାଦି ଇତ୍ୟାଦି ।

ପ୍ରବେଶ ପଥରେ ଏଣ୍ଟ୍ରି ଅବା କିଛି ଲେଖା ନ ଥିଲେ ମଧ୍ୟ ପ୍ରସ୍ଥାନ ପଥରେ ସେମାନଙ୍କ ଭାଷାରେ କେଲୁଆର (KELUAR) ଲେଖାଥାଏ । ଏଣୁ ଏ ଶବ୍ଦ ସହ ପରିଚିତ ହେବାକୁ ହୁଏ । ଠିକ୍ ସେହିପରି ଶୌଚାଳୟଗୁଡ଼ିକରେ ସେମାନଙ୍କ ଭାଷାରେ




ଲେଖାଯାଇଥାଏ ଟାଣ୍ଡାସ୍ (TANDAS) ଅବା ସାଣ୍ଡାସ୍ (SANDAS) । ଏସବୁ ସୂଚନାର ଅର୍ଥ ଜାଣିବାକୁ ହୁଏ ଓ ଜାଣିଥିଲେ ଅସୁବିଧା ହୁଏନାହିଁ ।

ଜଳଖିଆ ପର୍ବ ପରେ ଆମେ 'ଥିମ୍ ପାର୍କ' (THEME PARK) ବା ଥିମ୍ ଉଦ୍ୟାନ ପରିଦର୍ଶନରେ ଗଲୁ । ଏଠାରେ ଶୌଚାଳୟର ନାମ ଭିନ୍ନ ଥିଲା । ତାହା ଥିଲା ସୁରାଓ (SURAO) । ଏହା ଜାଣିବା ଆବଶ୍ୟକ, କାରଣ ଆମ ଦଳରେ ସଂଖ୍ୟାଧିକ ବରିଷ୍ଠ ନାଗରିକ ଥିଲେ ।

'ଥିମ୍ ଉଦ୍ୟାନ' ଏକ ଆମୋଦପ୍ରମୋଦ ସ୍ଥଳୀ । ଅନ୍ୟ ଦେଶରେ ଯେଉଁଭଳି 'ଏସେଲ୍ ଓ୍ୱାର୍ଲଡ୍'ମାନ ଥାଏ ଠିକ୍ ଅନୁରୂପ ଏଠାରେ 'ଥିମ୍ ପାର୍କ' ବା ଥିମ୍ ଉଦ୍ୟାନ । ସେଠାରେ ବେଶ୍ କିଛିସମୟ କଟାଇଲୁ । ଆମ ସହ ଯାଇଥିବା ପିଲାମାନେ କେତେକ କୌତୁକ ଯାନ ଓ ହଠାତ୍ ଉତ୍‌ଥାନ-ପତନ ଯାନରେ ବସି ସେ ସମସ୍ତର ମଜା ନେଲେ । ଆମେ କେତେଜଣ ଗୋଟିଏ ସ୍ଥାନରେ ବସି ଚତୁର୍ଦ୍ଦିଗରେ ବିସ୍ତାରିତ ଅପରୂପ କୃତ୍ରିମ ସୌନ୍ଦର୍ଯ୍ୟ ଓ କଳାକୃତିଗୁଡ଼ିକୁ ଉପଭୋଗ କରୁଥାଉ ।

ବେଶ୍ କିଛିସମୟ ବିତାଇଲା ପରେ ଆମେ ପିଲାମାନଙ୍କ ବିରୋଧ ସତ୍ତ୍ୱେ ସେଠାରୁ ଫେରିବାକୁ ବାଧ୍ୟ ହେଲୁ ।

*୧୫୭୧-ମହାନଦୀ ବିହାର, କଟକ-୪*

---

ସାଧାରଣଜ୍ଞାନ ପରୀକ୍ଷାର ଉତ୍ତର

୧ । ୧୯୮୧, କେରଳ, ୨ । ହୀରାବେନ୍ ମୋଦି, ୩ । ମେଧା ପାଟେକର, ୪ । ପ୍ରତିଭା ରାୟ, ୫ । କ୍ରିଷ୍ଣା, ୬ । ବାଲେଶ୍ୱର, ୮ । ରୁକୀୟା (Ruqaiya) ସୁଲ୍‌ତାନ୍ ବେଗମ୍ ।

# ଫଳ ପରି ଦିଶୁଛି; ମାତ୍ର ଫଳ ନୁହେଁ

ଶ୍ରୀ ପ୍ରତାପ କିଶୋର ମହାନ୍ତି

ପ୍ରଫେସର ନିଶିକାନ୍ତବାବୁ ତାଙ୍କ ପୁତ୍ର ତଥା ଶିଷ୍ୟ ରମେଶଙ୍କ ସହ ପ୍ରଭାତ ଭ୍ରମଣରେ ବାଟରେ ଥିବା ଏକ ପରିବା ଦୋକାନରୁ ଦୁଇଟି ଓଉ (Dillenia indica; Fam-Dilleniaceae) ଘରେ ଖଟାମିଠା ତରକାରି କରିବା ପାଇଁ କିଣି ଆଣିଲେ। ଘରେ ପହଞ୍ଚି ସେ କହିଲେ, "ରମେଶ ଦେଖ, ଏହି ଓଉଟି ଏକ ଫଳ ଭଳି ଦିଶୁଛି ନା?" ରମେଶ ମୁଣ୍ଡ ହଲାଇ ନିଜର ସମ୍ମତି ଜଣାଇଲେ।

ମାଂସଳ ବୃତି
ଫଳ
EDIBLE CALYX
ଖାଦ୍ୟଯୋଗ୍ୟ ବୃତି

Pseudocarp of *Dillenia indica*.

ପ୍ରଫେସର ହସିକରି କହିଲେ, "ଏଇଠି ତୁମେ ଭୁଲ୍ କଲ। ଏହା ଫଳ ଭଳି ଦେଖାଗଲେ ମଧ୍ୟ ଫଳ ନୁହେଁ। ଏହାକୁ ଉଦ୍ଭିଦ ବିଜ୍ଞାନୀମାନେ ମାୟାଫଳ ବା ମିଥ୍ୟାଫଳ (False Fruit or Pseudocarp) ବୋଲି କହିଥାଆନ୍ତି। ଏଇ ଓଉଟିକୁ ଲମ୍ବ ଭାବେ କାଟିଲେ ତାହା ତୁମେ ଜାଣି ପାରିବ। ତାହା ଉପରେ ଜଡ଼ି ରହିଥିବା ମାଂସଳ ଚୋପା (ଯାହା ଆମେ କାଟି ଖଟା କରିଥାଉ) ହେଲେ ମାଂସଳ ବୃତିରାଜି। ଏହି ବୃତିଗୁଡ଼ିକରେ ଖାଦ୍ୟ ସଞ୍ଚିତ ହୋଇ ରହିଥିବାରୁ ଏଗୁଡ଼ିକ ମାଂସଳ ଓ ଖାଦ୍ୟ ଯୋଗ୍ୟ । ମାଂସଳ ବୃତିମାନଙ୍କ ଦ୍ୱାରା ଆଚ୍ଛାଦିତ ହୋଇ ଛୋଟ ଛୋଟ ଫଳମାନେ ଭିତରେ ସଜ୍ଜିତ ହୋଇ ରହିଛନ୍ତି (ଯେଉଁଗୁଡ଼ିକୁ ଆମେ ଫୋପାଡ଼ିଦେଉ)"

ପ୍ରଫେସର କହିବାରେ ଲାଗିଥାଆନ୍ତି, "ଆଉ ଗୋଟିଏ ମିଥ୍ୟାଫଳ ଦେଖ।" ଏହା କହି ସେ ଘରେ ଥିବା ଫ୍ରିଜ୍‌ରୁ ଗୋଟିଏ ସେଓ କାଢ଼ି ଦେଖାଇଲେ। ରମେଶ କହିଲେ, "ଏହା ତ ଗୋଟିଏ ଫଳ। ଆଉ ମିଥ୍ୟାଫଳ କିପରି ହେଲା ?" ପ୍ରଫେସର ସେଓଟିକୁ ଆଡ଼ (Transverse Section) ଭାବେ କାଟି କରି ରମେଶଙ୍କୁ ଦେଖାଇଲେ ଓ କହିଲେ, "ଦେଖ, ଏହି ଫଳ(Pome)ର ମାଂସଳ ଅଂଶ ପୁଷ୍ପାଧାର (Thalamus)। ଏହି ମାଂସଳ ଅଂଶ ବଢ଼ିଯାଇ ଫଳଟିକୁ ଆବୃତ କରି ରଖିଛି । ଫଳଟି ସେଓର ମଧ୍ୟଭାଗରେ ଅବସ୍ଥିତ, ଯାହାକୁ ଆମେ ନ ଖାଇ ଫୋପାଡ଼ିଦେଉ। ନାସପାତି ମଧ୍ୟ ସେହି ଜାତୀୟ ଫଳ (Pome)। ପ୍ରଫେସର ଆହୁରି କହିଲେ, "ଲଙ୍କାଆମ୍ବ ବା କାଜୁଫଳ ମଧ୍ୟ ଗୋଟିଏ ମିଥ୍ୟାଫଳ। ଏହାର ମାଂସଳ ବୃନ୍ତ (Peduncle) ଅଗ୍ରରେ ନଟ୍ ଜାତୀୟ ଫଳ ଅଛି ମାତ୍ର। ଲଙ୍କାଆମ୍ବ ବା କାଜୁଫଳ ପାଇଗଲେ ପିଲାମାନେ ଏହି ମାଂସଳ ଅଂଶଟିକୁ ଖାଇଥାଆନ୍ତି, ଯାହା ରାଗୁଆରାଗୁଆ ମିଠା ଲାଗେ। ମାଂସଳ ଅଂଶ ଉପରେ ଯେଉଁ ନଟ୍ ଅଛି, ସେଥିରୁ କାଜୁ ମିଳେ। ଏହିପରି ଅନ୍ୟ ଏକ ମିଥ୍ୟାଫଳ ହେଲା ଧୋବାକାଳି ଉତ୍ପନ୍ନ କରୁଥିବା ଫଳ (Marking Nut)।"

ତା'ପରେ ପ୍ରଫେସର ରମେଶଙ୍କ ହାତ ଧରି ଘରର ବାଡ଼ିପଟକୁ ନେଇଗଲେ ଓ ଗୋଟିଏ ବଡ଼ ଗଛରେ ମାଡ଼ିଥିବା ଗୋଟିଏ ପୁରୁଣା ଦେଶିଆଳୁ ଲତା




(Dioscorea alata)କୁ ଦେଖାଇ କହିଲେ, "ରମେଶ ଦେଖ ଦେଶିଆଳୁ ପତ୍ରର କକ୍ଷରେ ଯେଉଁ ଫଳସଦୃଶ ଗୋଲାକାର ବସ୍ତୁ (ଯାହାକୁ ଆମେ ଦେଶୀଆଳୁ ମାତରା ବୋଲି କହୁ), ସେଗୁଡ଼ିକ ଫଳ ନୁହନ୍ତି। ଖାଦ୍ୟ ସଞ୍ଚିତ ହୋଇ କଳିକା (Bud) ସ୍ଫୀତ ଓ ଗୋଲାକାର ହୋଇ ଫଳ ପରି ଦେଖାଯାଏ; ମାତ୍ର ଏହା ଫଳ ନୁହେଁ, କଳିକାର ରୂପାନ୍ତର। ଏପରି କଳିକାକୁ କନ୍ଦିକା (Bulbil) କୁହାଯାଏ। ଏଗୁଡ଼ିକ ଅଙ୍ଗୀୟ ପ୍ରଜନନର (Vegetative reproduction) କାର୍ଯ୍ୟ କରନ୍ତି। ଏଗୁଡ଼ିକ ମାଟିରେ ପଡ଼ିଲେ ସେଥିରୁ ନୂଆ ଦେଶିଆଳୁ ଲତା ଉତ୍ପନ୍ନ ହୁଏ।

*ଦେଉଳସାହି (ସାଇ ମନ୍ଦିର ସମ୍ମୁଖ), ତୁଳସୀପୁର, କଟକ-୮*



ଯେତେବେଳେ ପେଟ୍ରୋଲ ଦର ବଢ଼େ, ସେତେବେଳେ ମୁଁ ଗାଡ଼ିର ଓଜନ କମାଇବା ପାଇଁ ଗୋଟିଏ ଗୋଟିଏ ଅଂଶ ଖୋଲିଦେବା ଦ୍ୱାରା ଏପରି ଅବସ୍ଥାରେ ପହଞ୍ଚିଲାଣି ।

## ଅଛି-ନାହିଁ

ଦୁଇଟି ଚିତ୍ର ମଧ୍ୟରେ ଅତି କମ୍‌ରେ ୭ଟି ପ୍ରଭେଦ ଅଛି । ବାହାର କରନ୍ତୁ ତ ! *(ଉତ୍ତର ୩୫ ପୃଷ୍ଠାରେ)*







# ଜନଶ୍ରୁତି-ଆମର ଢଗଢମାଳି

ଶ୍ରୀ ଅନ୍ତର୍ଯାମୀ ଲେଙ୍କା

*'ବଞ୍ଚ ଏବଂ ବଞ୍ଚାଅ।'*

ନିଜକୁ ବଞ୍ଚାଇ ଅନ୍ୟକୁ ବଞ୍ଚାଇବାର ନୀତିରୁ ଦୂରେଇଯାଇ ଆଜି ମଣିଷ ନିଜ ସ୍ୱାର୍ଥ ପାଇଁ ଅନ୍ୟର କ୍ଷତି କରିବାକୁ ପଚ୍ଛାଉନାହିଁ। ଏହା କେବଳ ବ୍ୟକ୍ତିଗତ ସ୍ତରରେ ନୁହେଁ, ସମୂହ ତଥା ଜାତୀୟ ସ୍ତରରେ ଏଭଳି କାର୍ଯ୍ୟ ପାଇଁ ଯୁଦ୍ଧ, ବିସ୍ଫୋରଣ ଆଦି ବହୁପ୍ରକାର ଅଭାବନୀୟ କାଣ୍ଡ ଘଟିଯାଉଛି। ମଣିଷ ଯେତେ ଶିକ୍ଷିତ ହେବା ସହ ବିଜ୍ଞାନର ଅଗ୍ରଗତି ଘଟାଇ ଚାଲିଲେ ମଧ୍ୟ ଅହଂକାରରୁ ଦୂରେଇଯାଇ ପାରୁନାହିଁ, ହେଲେ ବେଳେବେଳେ ଜୀବଜଗତର-- ଅର୍ଥାତ୍ ପଶୁ, ପକ୍ଷୀମାନଙ୍କର ଦୃଷ୍ଟାନ୍ତମୂଳକ କାର୍ଯ୍ୟ ମଣିଷସମାଜକୁ ଦିଗ୍‌ଦର୍ଶନ ଦେଇଥାଏ। ଏଭଳି ଏକ ଘଟଣା ଚଣ୍ଡୀଖୋଲ ଛକରେ ଘଟିଥିଲା।

ଏକ ଷ୍ଟୁଡିଓ ନିକଟରେ ଶତାଧିକ କାଉ ଏକଜୁଟ ହୋଇ ଖୁବ୍ ଜୋର୍‌ରେ ରାବି ଉଡୁଥିବାର ଦେଖିବାକୁ ମିଳିଥିଲା। ସେମାନେ ଏତେ ଜୋର୍‌ରେ ରାବୁଥିଲେ ଯେ ଛକରେ ଉପସ୍ଥିତ ଥିବା ଲୋକେ ଏହାର କାରଣ ଖୋଜିବାକୁ ଯାଇଥିଲେ। ନିକଟସ୍ଥ ଏକ ଚମ୍ପାଗଛରେ ଦୁଇଟି ପାରା ଗୋଟିଏ ଡାଳରେ ଝୁଲି ରହିଥିଲେ। ପାରାଦୁଇଟିଙ୍କର ଦୁଇଟିଯାକ ଗୋଡ଼ରେ ଗୋଟିଏ ଲେଖାଏଁ ବାଣି (ସୂତା) କୌଣସିପ୍ରକାର ଗୁଡ଼େଇ ହୋଇଯାଇଥିଲା। ଯାହା ଦେଖିବାକୁ ମିଳିଲା, ପାରାଦୁଇଟି ଉଡ଼ିଆସି ଚମ୍ପାଗଛରେ ବସିବା ପରେ ଗଛର ଡାଳରେ ବାଣି ଗୁଡ଼େଇ ହୋଇଯିବାରୁ ଆଉ ସେମାନେ ଉଡ଼ିପାରି ନ ଥିଲେ।

କାଉଟି ଏହାକୁ ପ୍ରଥମେ ଦେଖିବା ପରେ ରାବିରାବି ଅନ୍ୟ କାଉମାନଙ୍କୁ ଡାକିଥିଲା। ଫଳରେ ଏକଜୁଟ ହୋଇଥିବା କାଉମାନେ ଚମ୍ପାଗଛରେ ବାନ୍ଧି ହୋଇ ପଡ଼ିଥିବା ଏହି ପାରାଦୁଇଟିଙ୍କୁ ବିପଦରେ ଛାଡ଼ି ନ ଦେଇ ଉଦ୍ଧାର କରିବା ପାଇଁ ମେଳି ହୋଇଥିଲେ। ଶତାଧିକ ସଂଖ୍ୟାରେ କାଉ ଗଛ ଚାରିପଟେ ଘେରିଥିବାବେଳେ ଅନେକ ଏହା ଚାରିପଟେ ଉଡ଼ିବୁଲୁଥିଲେ। ସେଠାରେ ଉପସ୍ଥିତ ଥିବା ଢେଙ୍କାନାଳ ଅଞ୍ଚଳର ଜଣେ ଯୁବକ ଗଛରେ ଚଢ଼ି ପାରାଦୁଇଟିକୁ ଡାଳରୁ ମୁକ୍ତ କରିଦେବା ପରେ ପାରାଦୁଇଟି ସହ କାଉମାନେ ଘଟଣାସ୍ଥଳ ଛାଡ଼ି ଉଡ଼ିଯାଇଥିଲେ।



ଏହା ତ ଗଲା ପକ୍ଷୀମାନଙ୍କର କଥା। ଏପରି ବହୁ ଘଟଣା ଅଛି-- ପଶୁ ଓ ପକ୍ଷୀମାନେ ମଣିଷ-ମାନଙ୍କର ଜୀବନ ରକ୍ଷା କରିପାରିଛନ୍ତି। ସେମାନଙ୍କ ମଧ୍ୟରେ କୁକୁରର ସ୍ଥାନ ସବା ଆଗରେ ରହିଛି। ମଣିଷ ନିମକହାରାମ ହୋଇଯାଉଛି; ମାତ୍ର କୁକୁର ତା'ର ଉପସ୍ଥିତ ବୁଦ୍ଧି ଖଟାଇ ମାଲିକର ଜୀବନ ବଞ୍ଚାଇ ଦେଇଛି। ବହୁସ୍ଥଳରେ ମାଲିକକୁ ବଞ୍ଚାଇବାକୁ ଯାଇ ନିଜର ଜୀବନ ମଧ୍ୟ ଦେଇଦେଉଛି।

ଚାଷକାର୍ଯ୍ୟରେ ସହାୟତା କରିବା ପାଇଁ ଜଣେ ବ୍ୟକ୍ତି ଗୋଟିଏ ଖଚର ପାଳିଥିଲେ। ସେ ଘରେ ଶୋଇଥିବାବେଳେ ଘରେ ନିଆଁ ଲାଗିଯାଇଥିଲା। ଭିତରେ ଥିବାରୁ ସେ ତାହା ଜାଣିପାରି ନ ଥିଲେ; କିନ୍ତୁ ସେ ପାଳିଥିବା ଖଚର ଏ ସମ୍ପର୍କରେ ଜାଣିବା ପରେ ଜୋର୍‌ରେ ଚିତ୍କାର କରିଥିଲା। ନିଦରୁ ଉଠି ମାଲିକ ଦମ୍‌କଳ ବାହିନୀକୁ ଖବର ଦେଇଥିଲେ। ଘରର ଆସବାବପତ୍ର ଅବଶ୍ୟ ସେତେବେଳକୁ ଜଳିଯାଇଥିଲା, ତେବେ ଖଚର ଯୋଗୁଁ ଜୀବନ ରକ୍ଷା ହୋଇଗଲା। ପୂର୍ବରୁ ତାଙ୍କର ଭଉଣୀର ଜୀବନ ମଧ୍ୟ ସେ ବଞ୍ଚାଇ ଦେଇଥିଲା।

ଅତଏବ, ମଣିଷ ନିଜକୁ ସବୁଠାରୁ ବୁଦ୍ଧିଆ ଓ ଶ୍ରେଷ୍ଠ ପ୍ରାଣୀ ବୋଲି କହି ଗର୍ବ କରୁଛି। ଯିଏ ମଣିଷମାନଙ୍କଠାରୁ ସତ୍ ଶିକ୍ଷା ଲାଭ କରୁନାହିଁ, ସେ ପଶୁପକ୍ଷୀମାନଙ୍କର ଭଲ ଗୁଣର ମୂଲ୍ୟ ବୁଝିବ କ'ଣ ? ମଣିଷ ମଣିଷର ଶତ୍ରୁ ପାଲିଟିବାରେ ଲାଗିଛି। ସ୍ନେହ, ମମତା ଓ କର୍ତ୍ତବ୍ୟ ଭୁଲିଯାଇଛି। ଏଥିପାଇଁ ପିଲାଟିଦିନରୁ ଘରେ ତଥା ବିଦ୍ୟାଳୟରେ ପାଠ ସାଥେ ସାଥେ ସାମାଜିକ ଚଳଣିର ଶିକ୍ଷା ପ୍ରଦାନ କରିବାର ଏବେ ଯଥେଷ୍ଟ ଆବଶ୍ୟକତା ପଡୁଛି। ଏଥିପାଇଁ ଗଭୀର ଭାବରେ ଚିନ୍ତା କରିବାର କଥା।

*ରାଜାବଗିଚା, କଟକ-୭୫୩୦୦୯*

# ସେବା ପାଇଁ ଯାଉଜୀବନ ମୋର

ଶ୍ରୀ ଅମିତ ଚନ୍ଦା

ମୋ ଶରୀରରେ ଲୋଡ଼ା ଖଣ୍ଡିଏ ପଟା
ତହିଁରେ ଭରିଛି କେତେ ଯେ କଣ୍ଟା ।
ଶତ୍ରୁ ପାଲଟେ ମୁଁ ଚୋର ଡାକୁର
ରକ୍ଷକ ମୁଁ ପରା ଘର ଲୋକର ।
ବୁଲିଯା'ନ୍ତି ଯେବେ ଘରକୁ ଛାଡ଼ି
ପକାନ୍ତି ତାଲା ମୋ ହାତକୁ ଯୋଡ଼ି ।
ଦିଅନ୍ତି ଯାହା ମୁଁ କରଇ ତାହା
ତାଙ୍କର ମୁଁ ପରା ଏକା ହିଁ ସାହା ।
ନାଆଁଟି ମୋର ଜାଣ କବାଟ
କରେନି କେବେ ମୁଁ ଅଳିଅଝଟ ।
କରିବାକୁ ସେବା ମୁଁ ଆଗଭର
ସେବା ପାଇଁ ଯାଉ ଜୀବନ ମୋର ।

**



# ଗରବ ରହିନି କା'ର

ଶ୍ରୀ ଅଭୟ୍ କୁମାର ଜେନା

ଦୂର ରାଇଜରୁ ଆସିଥିଲେ ଜଣେ
ଓଡ଼ିଶା ଭ୍ରମଣ ପାଇଁ,
ଜଗତପ୍ରସିଦ୍ଧ ଜଗନ୍ନାଥଧାମ
ପୁରୀରେ ମିଳିଲେ ଯାଇ।
ଅମାପ ସମ୍ପତ୍ତି ଧନଦଉଲତେ
ପୂରିଥିଲା ତାଙ୍କ ଘର,
ସେପାଇଁ ମନରେ କେତେ ଯେ ଗରବ
କାହାକୁ ଅବା ଖାତର ?
ଶୁଣିଥିଲେ ସିଏ ନୀଳାଚଳଧାମେ
ପ୍ରଭୁଙ୍କ କୀରତିଗାଥା,
ଇଚ୍ଛା ହେଲା ତାଙ୍କୁ ଭୋଗ ଅରପିବେ
ଠାକୁରେ ଚାହିଁବେ ଯଥା।
ମନାସି ଏ କଥା ଡାକିଲେ ପଣ୍ଡାଙ୍କୁ
ଭାଷିଲେ ଦୃଢ଼ବଚନ,
"ପଚାର ପ୍ରଭୁଙ୍କୁ କି ଭୋଗ ଚାହାନ୍ତି,
ତୋଷିବି ତାହାଙ୍କ ମନ।"

ରାତିରେ ପଣ୍ଡାଙ୍କୁ ସ୍ୱପନ ଆଦେଶେ
କହିଲେ ଜଗତନାଥ,
"ଖାଇଲେ ଖଣ୍ଡିଏ ଗଜମୋତି-ପାନ
ପୂରିବ ମୋ ମନୋରଥ।"

ପ୍ରଭୁଙ୍କର ଇଚ୍ଛା ଜାଣି ସେ ଯୁବକ
ଗଜମୋତି ଖୋଜା ପାଇଁ,
ବୁଲି ବୁଲି କେତେ ହାତୀଙ୍କୁ ମାରିଲେ
ନ ମିଳିଲା ଟିକେ କାହିଁ।

ହାତୀକିଣା ପାଇଁ ସବୁଧନ ତାଙ୍କ
ଚାହୁଁ ଚାହୁଁ ଗଲା ସରି,
ବାସନା ତାଙ୍କର ଅପୂର୍ଣ୍ଣ ରହିଲା
ବିଷାଦେ ହେଲେ ସେ ଘାରି।

ମିଳିଲେ ଶେଷରେ ନିରୁପାୟ୍ ହୋଇ
ନୀଳାଚଳ ଧାମେ ଯାଇ,
ଦମ୍ଭ ଅଭିମାନ ଭାଜିଗଲା ଆଜି
କିବା ଲାଭ ବଞ୍ଚିଥାଇ ?

ଜଗତର ନାଥ ଜଗତଠାକୁର
ସପନେ ଦେଲେ ଉତ୍ତର,
"ଆଜିଯାଏ ଏଇ ଧରଣୀ ବୁକୁରେ
ଗରବ ରହିନି କା'ର ।

ଧନସମ୍ପତ୍ତିରେ ଅନ୍ଧ ହୋଇ ତୁମେ
ଧରାକୁ ମଣିଲ ସରା,
ତୁମ ଭଳି ଲୋକ ନ ବୁଝି ଅନେକ
କାନ୍ଦନ୍ତି ଜୀବନସାରା।"

ସବ୍ ପୋଷ୍ଟମାଷ୍ଟର, କନିକା ରାଜବାଟୀ, କଟକ-୮

ପହେଳିର ଉତ୍ତର--୧। ଘଣ୍ଟା, ୨। ଧନୁଶର, ୩। ଗୁଡ଼ି




# ବଡ଼ହେଲେ ହେବୁ ଜଗତଜିତା

ଶ୍ରୀ ସୁଶାନ୍ତ କୁମାର ନନ୍ଦ

ଏଡ଼ିକି ଟିକି ପିଲାଟିଏ । ବୟସ ତିନି କି ଚାରି ହେବ । ପିଲାଟିର ମାଟିକାଦୁଅରେ ଖେଳନା ଗଢ଼ି ଖେଳିବାରେ ଭାରି ସଉକ୍ । ସେଦିନ ସବୁଦିନ ପରି ପିଲାଟି ମାଟିକାଦୁଅରେ ବସି କ'ଣ ସବୁ ଖେଳନା ଗଢ଼ି ନିଜେନିଜେ ବସି ଖେଳୁଥାଏ । ପିଲାଟିର ବାପାଙ୍କର ଜଣେ ବନ୍ଧୁ ସେଦିନ ତାଙ୍କ ଘରକୁ ଆସି-ଥାଆନ୍ତି । ବନ୍ଧୁଜଣକ ପିଲାଟିକୁ ମାଟିକାଦୁଅରେ ଖେଳୁଥିବାର ଦେଖି ପ୍ରଶ୍ନ କଲେ, "ବାବା ତମେ ବସି ମାଟିକାଦୁଅରେ କ'ଣ ସବୁ ତିଆରି କରି ଖେଳୁଚ ?" "ମୁଁ ବନ୍ଧୁକ ତିଆରି କରୁଛି" ନିର୍ଭୀକ ଭାବରେ କହିଲା ପିଲାଟି । ଏହା ଶୁଣି ଭଦ୍ରବ୍ୟକ୍ତିଜଣକ ପୁଣି ପଚାରିଲେ, "ତମେ ଆଉକିଛି ଖେଳନା ନ ଗଢ଼ି ଏ ବନ୍ଧୁକ କାହିଁ ତିଆରି କରୁଚ ?" ପିଲାଟି ନ ଡରିଯାଇ କହିଲା, "ମୁଁ ମୋର ଶତ୍ରୁମାନଙ୍କୁ ପରାସ୍ତ କରିବା ପାଇଁ ଏହାକୁ ତିଆରି କରୁଛି ।" ପିଲାଟିର କଥାରେ ବ୍ୟକ୍ତି ଜଣକ କୌତୂହଳୀ ହୋଇ ପୁଣି ଥରେ ପଚାରିଲେ, "ତମର ପୁଣି ଶତ୍ରୁ କିଏ ବାବା ?" କୁନିପିଲାଟି ବୀରତ୍ୱର ସହ ଏଥର କହିଲା, "ଇଂରେଜମାନେ ହିଁ ହେଉଛନ୍ତି ମୋର ଶତ୍ରୁ ।" ସେଦିନ ସେହି ପିଲାଟିର ମୁଖରୁ ଏଭଳି କଥା ଶୁଣି ସେ ଭଦ୍ରବ୍ୟକ୍ତି କାହିଁକି, ତାଙ୍କ ପରିବାରର ସମସ୍ତେ ଚକିତ ହୋଇଯାଇଥିଲେ । ବ୍ୟକ୍ତିଜଣକ ପିଲାଟିକୁ ଖୁସିରେ କୋଳକୁ ନେଇ କହିଥିଲେ– ବାବା ତମେ ବଡ଼ ହେଲେ ନିଶ୍ଚୟ ଦେଶ ତଥା ଜାତିର ଗୌରବ ଆଣିବ । ତୁମେ ଦିନେ ଜଗତଜିତା ହେବ ।

ପିଲାଟିର ଆଉ ଏକ ପିଲାଦିନର ଘଟଣା । ସେତେବେଳକୁ ପିଲାଟିର ବୟସ ଦଶ କି ବାର ହେବ । ସେତେବେଳେ ସେ ଥିଲା ଲାହୋର ଡି.ଏ.ଭି. ସ୍କୁଲର ଜଣେ ମେଧାବୀ ଛାତ୍ର । ପାଠପଢ଼ା ସହିତ ତା'ର ଆଉ ଏକ ଅଭ୍ୟାସ ଥିଲା । ସେ ଦୈନନ୍ଦିନ ସମ୍ବାଦପତ୍ର ପଢୁଥିଲା । ଯାହା ବି ହେଇଯାଉ ପ୍ରତିଦିନ ସକାଳୁ ସେ ନିଶ୍ଚୟ ସମ୍ବାଦପତ୍ର ପଢୁଥିଲା । ସେ ସମୟରେ ଦେଶର କୋଣ ଅନୁକୋଣରେ ଇଂରେଜମାନଙ୍କ ବିରୋଧରେ ଭାରତୀୟମାନେ ସଂଗ୍ରାମ ଜାରି ରଖିଥିଲେ ଆଉ ସେ ସବୁର ଟିକିନିଖି ବିବରଣୀ ପ୍ରାୟତଃ ସବୁ ସମ୍ବାଦପତ୍ରରେ ପ୍ରକାଶିତ ହେଉଥିଲା । ସେହିସବୁ ସମ୍ବାଦକୁ ପିଲାଟି ବିଶେଷ ଆଗ୍ରହର ସହିତ ପଢୁଥିଲା ।

ସେଦିନ ସମ୍ବାଦପତ୍ରର ପ୍ରଥମ ପୃଷ୍ଠାରେ ପ୍ରକାଶିତ ଏକ ଖବର ପଢି ପିଲାଟି ଦୁଃଖିତ ଆଉ ମର୍ମାହତ ହୋଇଗଲା । ସେ ଯେତିକି କ୍ରୋଧିତ ହେଲା, ତା' ଠାରୁ ଅଧିକ ପ୍ରତିହିଂସାପରାୟଣ ହୋଇଉଠିଲା । ତା'ର କୋମଳ ହୃଦୟ ପ୍ରକମ୍ପିତ ହେବାକୁ ଲାଗିଲା । ସେ କ'ଣ କରିବ, କ'ଣ ନ କରିବ କିଛି ବି ବୁଝି ପାରିଲା ନାହିଁ । ସେଦିନ ସେହି ହୃଦୟବିଦାରକ କାହାଣୀଟି ପଢ଼ି ଘରେ କାହାରିକୁ କିଛି ନ ଜଣାଇ ହଠାତ୍ ସେ କୁଆଡେ ଅନ୍ତର୍ଦ୍ଧାନ ହୋଇଗଲା । ଦୀର୍ଘ ତିନିଦିନ ପର୍ଯ୍ୟନ୍ତ ତା'ର କୌଣସି ସନ୍ଧାନ ମିଳିଲାନି । ଘରେ ସମସ୍ତେ ବ୍ୟସ୍ତବିବ୍ରତ ହୋଇପଡ଼ିଲେ । ଚାରି ଆଡ଼େ ଖୋଜିବାରେ ଲାଗିଲେ; ହେଲେ କିଛି ବି ଫଳ ମିଳିଲାନି । କେଉଁଠାରେ ପିଲାଟିର ସନ୍ଧାନ ମିଳିଲାନି ।

ଯେଉଁପରି ଭାବରେ ସେ ହଠାତ୍ ଅନ୍ତର୍ଦ୍ଧାନ ହୋଇଯାଇଥିଲା, ସେହିଭଳି ଦିନେ ପିଲାଟି ସମସ୍ତଙ୍କୁ ଚକିତ କରି ଆସି ଘରେ ପହଞ୍ଚିଗଲା । ମମତାମୟୀ ମା ପୁଅକୁ ପାଖରେ ଦେଖି କୋଳେଇନେଲେ । ଚକ୍ଷୁରୁ ତାଙ୍କର ଝରିପଡ଼ିଲା ଆନନ୍ଦର ଅଶ୍ରୁ । ପିଲାଟିର କୁନି ଭଉଣୀ ଦଉଡ଼ି ଆସି ପଚାରିଲା, "ତୁ ଏତେଦିନ ଯାଏଁ ଥିଲୁ କୋଉଠି ଭାଇ ?"

ଏହାପରେ ପିଲାଟି ପରିବାରର ସଭିଙ୍କ ଆଗରେ ଗୋଟିଗୋଟି କରି ସବୁ କହିଥିଲା । ସେଦିନ ସମ୍ବାଦପତ୍ରରୁ ସେ ଜାଲିଆନାୱାଲାବାଗ୍‌ର ସେ ମର୍ମନ୍ତୁଦ କାହାଣୀ ବିଷୟରେ ପଢ଼ିଥିଲା । ସେଦିନ ଥିଲା ୧୯୧୯ ଏପ୍ରିଲ ୧୩ ତାରିଖ । ଇଂରେଜ ସୈନ୍ୟମାନଙ୍କ ଆଖିବୁଜା ଗୁଳି ଚାଳନାରେ ସେଦିନ କିପରି ଭାବରେ ୩୭୯ ଜଣ ନିରୀହ ଜନତା ପ୍ରାଣ ହରାଇଥିଲେ ଆଉ ୧୧,୧୩୭ ଜଣ ଆହତ ହୋଇଥିଲେ । ଲୁହାକୁ ଚୁମ୍ବକ ଯେପରି ଭାବରେ ଆକର୍ଷଣ କରେ, ସେ ଦିନର ସେହି ଘଟଣାଟି ପିଲାଟିର କୋମଳମନକୁ ସେହିପରି ଆକର୍ଷଣ କରିଥିଲା । ଶେଷରେ ସେ ସ୍କୁଲ ବ୍ୟାଗ୍‌କୁ କାନ୍ଧରେ ପକାଇ ଟ୍ରେନ ଚଢ଼ି ସିଧା ଯାଇ ପହଞ୍ଚିଥିଲା ଅମୃତସରରେ ଆଉ ଟ୍ରେନ୍‌ରୁ ଓହ୍ଲାଇ ସିଧା ଧାଇଁଯାଇଥିଲା ସେହି ପବିତ୍ର ମାଟିକୁ । ସେଠାରେ ପହଞ୍ଚି ସେ ଭୋ-ଭୋ ହୋଇ କାନ୍ଦିବାକୁ ଲାଗିଥିଲା । ସେ ସେହି ରକ୍ତଭିଜା ମାଟିକୁ ଆଣି ମୁଣ୍ଡରେ ମାରିଥିଲା ଆଉ କିଛି ନିଜ ସାଥିରେ ନେଇଥିବା ଏକ ଛୋଟ ବାକ୍‌ସରେ ରଖିଥିଲା । ସେହି ମାଟିରେ ହିଁ ସେ ଶପଥ କରିଥିଲା– ସେହି ଘଟଣାର ଦିନେ ସେ ନିଶ୍ଚୟ ପ୍ରତିଶୋଧ ନେବ । ଏହା ପରେ ସେ ଘରକୁ ଫେରିଆସିଥିଲା ।

ଏହାପରେ ସେ ଛୋଟ ବାକ୍‌ସଟିକୁ ଖୋଲି ସେ ମାଟିକୁ ନିଜ କୁନି ଭଉଣୀକୁ ଦେଇ କହିଲା, "ନେ ଏହାକୁ ମୁଣ୍ଡରେ ମାରେ ଆଉ ଏ ବକ୍‌ସକୁ ପଢ଼ା ବହି ଥାକରେ ରଖି ଦେ । ଆମେ ସବୁଦିନ ଏହାକୁ ପୂଜା କରିବା ।" ପିଲାଟି ମୁଖରୁ ସେଦିନ ଏତକ ଶୁଣି ପରିବାରରେ ସଭିଏଁ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ତା ପରି ବୀରପୁଅ ପାଇଥିବାରୁ ସେଦିନ ବାପା ମା' ତା'ର ଖୁସିରେ ପୁଅକୁ କୋଳରେ ଜାବୁଡ଼ି ଧରି କହିଥିଲେ– ତୁ ନିଶ୍ଚୟ ଦିନେ ଜଗତଜିତା ହେବୁ ।

ସେଦିନର ସେହି ପିଲାଟି ଆଉ କେହି ନୁହେଁ, ସେ ହେଉଚନ୍ତି ବିପ୍ଲବୀ ଭଗତ୍ ସିଂ । ପଞ୍ଜାବର ଲାୟଲପୁର ଜିଲ୍ଲାର ବଙ୍ଗାଗ୍ରାମରେ ୧୯୦୭



ଅକ୍ଟୋବର ମାସର ଏକ ଶନିବାର ଦିନ ଜନ୍ମ ନେଇଥିଲେ । ତାଙ୍କ ପିତାଙ୍କର ନାମ ଥିଲା କିଶାନ ସିଂ ଆଉ ମା'ଙ୍କ ନାମ ବିଦ୍ୟାପତି ଦେବୀ । ସେ ଯେଉଁଦିନ ଜନ୍ମ ହୋଇଥିଲେ, ସେହିଦିନ ହିଁ ଇଂରେଜ ଶାସନକୁ ବିରୋଧ କରି ଜେଲରେ ଥିବା ତାଙ୍କର ପିତା ମୁକ୍ତ ହୋଇଥିଲେ । ସେଥିପାଇଁ ତାଙ୍କୁ ଭାଗ୍ୟବାନ୍ ମନେକରି ତାଙ୍କର ନାମ ଭଗତ୍ ରଖାଯାଇଥିଲା । ଦିନେ ଭଗତ୍ ସିଂ ସମଗ୍ର ଦେଶର ଟେକ ରଖିବାକୁ ସମର୍ଥ ହୋଇଥିଲେ । ଦେଶପାଇଁ ତାଙ୍କ ଆତ୍ମ ବଳିଦାନର କାହାଣୀ ଭାରତୀୟ ଇତିହାସରେ ସ୍ୱର୍ଣ୍ଣ ଅକ୍ଷରରେ ଲିପିବଦ୍ଧ ହୋଇ ରହିଯାଇଛି ।

*ମାରଡ଼ା, ଗୋପୀନାଥପୁର, କେନ୍ଦୁପାଟଣା,*
*କଟକ-୭୫୪୨୦୩*

---

### ଅଛି-ନାହିଁର ଉତ୍ତର

୧ । ହାତୀର ପାଦରେ ଗୋଟିଏ ନଖ ନାହିଁ, ୨ । ଗଛମୂଳ ବୁଦାରେ ପତ୍ରସଂଖ୍ୟା କମ୍, ୩ । ବସାରେ ପକ୍ଷୀଛୁଆଟିଏ ନାହିଁ, ୪ । ସପ୍ତଫେଣୀ ପତ୍ର ଭିନ୍ନ ପ୍ରକାରର, ୫ । ଦୂରରେ ଗୋଟିଏ ଗଛ ନାହିଁ, ୬ । ଦୂର ଗଛମୂଳ ପଥର ପାଖରେ ଗଛ ନାହିଁ, ୭ । ହାତୀର ଦାନ୍ତ ନାହିଁ ।

## ପାଟିଖୁଆଠି

ପପୁ ରାସ୍ତାରେ ଗାଡ଼ି ନେଇ ଯାଉଥିଲାବେଳେ ଟ୍ରାଫିକ୍ ପୋଲିସ୍ ତାକୁ ଅଟକେଇ ପଚାରିଲା, "ତୁମର ଡ୍ରାଇଭିଂ ଲାଇସେନସ୍ ଦେଖାଅ !"

ପପୁ- ମୋର ଲାଇସେନସ୍ ନାହିଁ ।

ପୋଲିସ୍- ଲାଇସେନସ୍ କରିନ ?

ପପୁ- ନାଁ

ପୋଲିସ୍- କାହିଁକି ଲାଇସେନସ୍ କରିନ ?

ପପୁ- ଲାଇସେନସ୍ ଅଫିସ୍‌କୁ ଯାଇଥିଲି ଯେ ସେମାନେ ଭୋଟର ଆଇ.ଡି. କାର୍ଡ ମାଗିଲେ । ମୋ ପାଖେ ଭୋଟର କାର୍ଡ ନାହିଁ ।

ପୋଲିସ୍- ତା'ହେଲେ ଶୀଘ୍ର ଭୋଟର ଆଇ.ଡି. କାର୍ଡ କର ।

ପପୁ- ଆଜ୍ଞା ଆଇ.ଡି. କାର୍ଡ ପାଇଁ ଯାଇଥିଲି ଯେ ସେମାନେ ରେସନ୍ କାର୍ଡ ମାଗିଲେ ।

ପୋଲିସ୍- ରେସନ୍ କାର୍ଡ କରିଦିଅ ।

ପପୁ- ଯାଇଥିଲି, ସେମାନେ ବ୍ୟାଙ୍କ୍ ପାଶ୍‌ବୁକ୍ ମାଗିଲେ ।

ପୋଲିସ୍- ତା'ହେଲେ ତୁମେ ଯାଇ ବ୍ୟାଙ୍କ୍‌ରେ ତମର ଜମାଖାତା ଖୋଲିଦିଅ ।

ପପୁ- ବ୍ୟାଙ୍କ୍ ବି ଯାଇଥିଲି ଜମା ଖାତା ଖୋଲିବା ପାଇଁ, ହେଲେ ସେମାନେ ଡ୍ରାଇଭିଂ ଲାଇସେନସ୍ ମାଗିଲେ । ........

# ଦୁଷ୍ଟକୁ ଉପଦେଶ ମନା

ସୁଶ୍ରୀ ସୋଫିଆ ମହାନ୍ତି

ଧାରାଶ୍ରାବଣର ଏକ ବର୍ଷଣମୁଖର ଦିବସ । ମୂଷଳ ଧାରାରେ ବର୍ଷାଜଳ ମେଘ ଦେହରୁ ଝଡ଼ି ପଡୁଛି । ଏତେ ମାତ୍ରାରେ ବର୍ଷା ପିଟୁଛି ଯେ ଜଙ୍ଗଲର ବୃକ୍ଷ କୋଟରରେ, ଗିରିଗୁହା ମଧ୍ୟରେ ମଧ୍ୟ ବର୍ଷା ଜଳ । ଜଙ୍ଗଲର ପଶୁପକ୍ଷୀ ଯେ ଯାହାର ଆଶ୍ରୟ ସ୍ଥଳରେ ବର୍ଷା ଦାଉରୁ ନିଜ ନିଜକୁ ବଞ୍ଚାଇ ରଖିବା ନିମନ୍ତେ ଚେଷ୍ଟାରତ ।

ଜଙ୍ଗଲର ଏକ ଝଙ୍କାଳିଆ ବୃକ୍ଷ ଶାଖାରେ ଦୁଇଟି ପକ୍ଷୀ ବସା ବାନ୍ଧି ରହିଥାନ୍ତି । ବର୍ଷା ହେତୁ ପକ୍ଷୀଦୁଇଟି ନିଜ ବସା ଭିତରେ ରହି ବର୍ଷା ଦାଉରୁ ନିଜକୁ ବଞ୍ଚେଇ ରଖିପାରିଛନ୍ତି । ମାତ୍ର ଥଣ୍ଡା ଓ କୋହଲା ପବନରେ ତାଙ୍କ ଦିହମୁଣ୍ଡ ଶୀତେଇ ଯାଉଥାଏ । ଶୀତର ଦାଉକୁ ଟିକିଏ କମାଇବା ପାଇଁ କାକଳି ସ୍ୱର ଲମ୍ବେଇ ଥାଆନ୍ତି । ଏହି ସମୟରେ ମାଙ୍କଡ଼ଟିଏ କୁଆଡୁ ତିନ୍ତିବୁଡ଼ି ସେହି ବୃକ୍ଷର ଗହଳ ଡାଳ ଭିତରେ ଆସି ବସିଲା । ବର୍ଷା ମାଡ଼ରେ ତା' ଦେହହାତ ଅବଶ ହୋଇ ପଡୁଥାଏ । ଦେହ ଖୁବ୍ ଜୋର୍‌ରେ ଥରୁଥାଏ ।

ମାଙ୍କଡ଼ଟିର ଏଭଳି ଅବସ୍ଥା ଦେଖି ପକ୍ଷୀଦୁଇଟି ମନରେ ଦୟା ହେଲା । କରିବେ ବା କ'ଣ ? ତାଙ୍କ ବସାଟି ଏଡ଼ିକ ଟିକିଏ ଛୋଟ ଯେ ମାଙ୍କଡ଼ର ଗୋଟିଏ ହାତ ପାପୁଲି ତା' ଭିତରେ ରହିପାରିବ ନାହିଁ । ଝିଅ ପକ୍ଷୀଟି ମାଙ୍କଡ଼କୁ କହିଲା, "ଆହା ମାଙ୍କଡ଼ଭାଇ ! ବର୍ଷାରେ ଭିଜି ଭିଜି କେତେ କଷ୍ଟ ନ ପାଇଲ ସତେ । ତୁମେ ତ ମଣିଷ ଭଳି ଆଗ ଗୋଡ଼ ଦୁଇଟିକୁ ହାତ ଭଳି ବ୍ୟବହାର କରିପାରୁଛ । ନିଜ ପାଇଁ ଆମ ଭଳି ବସାଖଣ୍ଡେ କରିପାରନ୍ତନି । ବେଳଅବେଳରେ ସେଇଠି ଆଶ୍ରୟ ନିଅନ୍ତ । ଖରାବର୍ଷାର ଦାଉ ଆଉ ସହିବାକୁ ପଡ଼ନ୍ତା ନାହିଁ ।"

ମାଙ୍କଡ଼ ସବୁ ଶୁଣିଲା । ତା'ର ଦୁଷ୍ଟ ସ୍ୱଭାବ ହେତୁ



ଝିଅ ପକ୍ଷୀଟିର ଭଲ କଥା ତାକୁ ଖରାପ ଲାଗିଲା । ମନେ ମନେ ତା' ଉପରେ ଭୀଷଣ ରାଗିଗଲା । ବର୍ଷା ଛାଡ଼ିଲେ ତାକୁ ପାନେ ଦବ ବୋଲି ଚିନ୍ତା କଲା ।

କିଛି ସମୟ ପରେ ବର୍ଷା ଛାଡ଼ିଗଲା । ଏଥର ମାଙ୍କଡ଼ ଝାଡ଼ିଝୁଡ଼ି ହୋଇ ଉଠିଲା । ଛାର ବକଟେ ନାଁକୁ ପକ୍ଷୀ , ସେ ପୁଣି ତାକୁ ଉପଦେଶ ଦେବ ! ସଙ୍ଗେ ସଙ୍ଗେ ସେମାନଙ୍କ ବସାକୁ ଭାଙ୍ଗିଦେଲା । ପକ୍ଷୀଦୁଇଟି ମନ ଦୁଃଖ କଲେ । ଆଉଥରେ ନୂଆ କରି ବସା ଗଢ଼ିଲେ । ଦୁଷ୍ଟ ମାଙ୍କଡ଼ ସେଇଟିକୁ ମଧ୍ୟ ଭାଙ୍ଗିଦେଲା ।

ମାଙ୍କଡ଼ର ଏ ଅନ୍ୟାୟ କାମସବୁ କାଉଟିଏ ଦେଖୁଥିଲା । ବିଚରା ପକ୍ଷୀ ଦୁଇଟି ଉପରେ ତାର ଦୟା ହେଲା । ସେ ସେମାନଙ୍କୁ ନିଜ ପାଖକୁ ଡାକି ତା' ବସା ପାଖରେ ବସା ବାନ୍ଧିବାକୁ କହିଲା । ସେମାନେ ତାଙ୍କର ମୁନିଆ ଥଣ୍ଟରେ ମାଙ୍କଡ଼କୁ ଖୁମ୍ପି ମାରିଦେବେ ବୋଲି ମାଙ୍କଡ଼ କାଉମାନଙ୍କ ପାଖ ମାଡ଼େନି । କାଉ ବସା ନିକଟରେ ଏ ଦୁଇଟି ପକ୍ଷୀ ବସାବାନ୍ଧିଲେ ।

ଦିନେ କାଉ ପକ୍ଷୀ ଦୁଇଟିଙ୍କୁ କହିଲା-- ଆଜିକାଲି କାହାକୁ ଉପଦେଶ ଦେବା ଉଚିତ ନୁହେଁ । ଯୁଗ ଓଲଟା ହେଲାଣି । ବିଶେଷ କରି ଦୁଷ୍ଟଙ୍କୁ ଉପଦେଶ ଦେଲେ ସେମାନେ ତାହାର ଅନର୍ଥ ବିଚାର କରି ଦାଉ ସାଧିବେ । ଏଣିକି ତୁମେ ତୁମର ଦୁଃଖସୁଖରେ ରୁହ । ଦୁଷ୍ଟ-ମାନଙ୍କଠାରୁ ସଦାସର୍ବଦା ଦୂରେଇ ରହିବା ପରା ବୁଦ୍ଧିମାନର କାମ ! ଦୁହେଁ କାଉ କଥାକୁ ଗ୍ରହଣ କଲେ । ନିଜ କାମରେ ନିଜେ ଲାଗି ରହି ସୁଖରେ ରହିଲେ । କାଉ ଭୟରେ ସେ ଦୁଷ୍ଟ ମାଙ୍କଡ଼ ତାଙ୍କ ପାଖ ମାଡ଼ିଲାନି ।

*ସରସ୍ୱତୀ ଶିଶୁ ମନ୍ଦିର(ଅଷ୍ଟମ ଶ୍ରେଣୀ) , ହିଞ୍ଜିଳିକାଟୁ (ଗଞ୍ଜାମ)*

***

# ବିଜ୍ଞାନ କୁଇଜ୍



ଶ୍ରୀ ସତ୍ୟନାରାୟଣ ମହାପାତ୍ର

୧ । ଆଖିର କେଉଁ ଅଂଶଟି ରଂଗୀନ୍ ଓ ଏହା ଆଖିର ପୁଅକୁ ଘେରାଇଥାଏ ?

୨ । ସବୁଠାରୁ ଦାମିକା Jade ପଥରର ରଂଗ କ'ଣ ?

୩ । ଜେଟ୍ ଇଂଜିନ୍ କିଏ ଉଦ୍ଭାବନ କରିଥିଲେ ?

୪ । ବର୍ତ୍ତମାନ ସୁଦ୍ଧା ଗୋଟିଏ ମାତ୍ର ଯାନ ୟୁରାନସ୍ ଓ ନେପ୍‌ଚ୍ୟୁନ୍‌କୁ ପଠାଯାଇଛି , ତାର ନାମ କ'ଣ?

୫ । ୧୮୯୫ ନଭେମ୍ବର ଆଠ ତାରିଖରେ ଉ୍ୱିଲିୟମ୍ କୋନାର୍ଡ ରୋଣ୍ଟେଜେନ୍ ଆକସ୍ମିକ ଭାବରେ କ'ଣ ଆବିଷ୍କାର କରିଥିଲେ ?

୬ । ଦକ୍ଷିଣ ଆମେରିକାରେ ବାଘ ବଂଶଧର କେଉଁ ପ୍ରାଣୀ ଦେଖାଯାନ୍ତି ?

୭ । ମହାକାଶ ବିଜ୍ଞାନରେ ଦୂରତ୍ୱର ଏକକଟି କେଉଁ ପ୍ରକାରର ମପାଯାଏ ?

୮ । ଆମେରିକାର ଜଣେ ଗଣିତଜ୍ଞ ପ୍ରଥମେ ଏହି ୧୦୧୦୦ ସଂଖ୍ୟାଟିର ଗୋଟିଏ ନାମ ଦେଇଥିଲେ । କିଏ ସେହି ବୈଜ୍ଞାନିକ ଓ ଏହାର ନାମ କ'ଣ ?

*ତଳତେଲେଙ୍ଗା ବଜାର , କଟକ- ୯*

**

(ଉତ୍ତର ୩୯ ପୃଷ୍ଠାରେ)



# ମହାନ୍ ମାତା ଓ ମହାନ୍ ପୁତ୍ର

ଡାକ୍ତର ନିମାଇଁ ଚରଣ ପରିଜା

ମୋହନଦାସ କରମଚାନ୍ଦ ଗାନ୍ଧୀ ମହାତ୍ମା ନାମରେ ଅଭିହିତ ହୋଇଥିଲେ । ଏହା ତାଙ୍କ ମାତାଙ୍କ ପ୍ରେରଣା ଓ କାର୍ଯ୍ୟାବଳୀର ପ୍ରଭାବ ପାଇଁ ହୋଇଥିଲା । ଗାନ୍ଧୀଙ୍କ ମା'ଙ୍କ ନାମ ଥିଲା ପୁତୁଳି ବାଈ । ପୁତୁଳିବାଈ ଗୋଟିଏ ବ୍ରତ ରଖିଥିଲେ । ସେ ସବୁଦିନେ କୋଇଲି ରାବ ନ ଶୁଣିବା ପର୍ଯ୍ୟନ୍ତ ଆହାର କରୁ ନ ଥିଲେ । ଗାନ୍ଧୀ ଏ କଥା ଜାଣିଥିଲେ । ସେ ମା'ଙ୍କୁ ଖୁବ୍ ଭଲପାଉଥିଲେ । ଗୋଟିଏ ଦିନ ବହୁ ସମୟ ପର୍ଯ୍ୟନ୍ତ କୋଇଲି ରାବ ଶୁଣିବାକୁ ମିଳିଲା ନାହିଁ । ମା' ସେମିତି ଉପବାସରେ ଥା'ନ୍ତି । ତରୁଣବୟସ୍କ ଗାନ୍ଧୀ ମାଆଙ୍କର ଉପବାସ ରହିବା କଥା ଚିନ୍ତାକରି ବଡ଼ ବିଚଳିତ ହେଉଥିଲେ । ତେଣୁ ସେ ଚିନ୍ତାକରି ଘର ବାହାରକୁ ବାହାରି ଆସିଲେ ଓ ନିଭୃତରେ କୋଇଲି ପରି ରାବ ଦେଲେ । କିଛି ସମୟ ପରେ ଗାନ୍ଧୀ ଭିତରକୁ ଆସି ମାଆଙ୍କୁ କୋଇଲି ରାବ ଦେଲାଣି ବୋଲି ଜଣାଇଲେ ଓ ଉପବାସ ଭଙ୍ଗ କରି ଖାଇବାକୁ ନିବେଦନ କଲେ । ସଙ୍ଗେ ସଙ୍ଗେ ପୁତୁଳିବାଈ ପୁଅର ଚତୁରତା ଜାଣିପାରିଲେ ଓ ମିଛ କହୁଛି ବୋଲି ଜାଣିନେଲେ ।

ମାତା ଦୁଃଖରେ ଭାଙ୍ଗିପଡ଼ିଲେ ଓ ଗାନ୍ଧୀଙ୍କ ଗାଲରେ ଚାପୁଡ଼ାଟିଏ ଲଗେଇ କହିଲେ– ''ମୁଁ କି ପାପ କରିଥିଲି ଯେ, ମୋ'ଠାରୁ ଏକ ମିଛୁଆ ପୁଅ ଜନ୍ମ ହୋଇଛି ।'' କହିଲା ଭିତରେ ପୁତୁଳିବାଈଙ୍କ ଆଖିରୁ ଧାର ଧାର ଲୁହ ବହିଯାଉଥାଏ । ଏ କଥା ଦେଖି ଗାନ୍ଧୀ ଅନୁତାପ କଲେ ଓ ମାଆଙ୍କ ପାଖରେ ତାଙ୍କୁ କ୍ଷମା ଦେବାପାଇଁ ପ୍ରାର୍ଥନା କଲେ । ସେଇଦିନଠାରୁ ସେ ପ୍ରତିଜ୍ଞା କଲେ ଯେ ଆଉ ଜୀବନରେ ମିଛ କହିବେ ନାହିଁ । ଗାନ୍ଧୀ ତାଙ୍କ ଜୀବନକାଳରେ ଗୋଟିଏ ଭଲ ଶିକ୍ଷା ପାଇଲେ ଓ ଜୀବନରେ ଯେତେବେଳେ ଜଟିଳ ପରିସ୍ଥିତିର ସମ୍ମୁଖୀନ ହେଉଥିଲେ ବି ମିଛ କହି ନ ଥିଲେ । ସେଥିପାଇଁ ତାଙ୍କ ଆତ୍ମଜୀବନୀର ନାମ ରଖିଥିଲେ "My experiment with truth" ବା 'ସତ୍ୟ ସହିତ ତଥ୍ୟର ସନ୍ଧାନ ।'

ଆମର ପୂର୍ବପୁରୁଷମାନେ ସତ୍ୟ ଉପରେ ବେଶି

ଜୋର୍ ଦେଉଥିଲେ । ମାତା ଜୀଜାବାଈ ଶିବାଜୀଙ୍କୁ ରାମାୟଣ ଓ ମହାଭାରତରୁ ରାମ, ପଞ୍ଚୁପାଣ୍ଡବଙ୍କ ବୀରତ୍ୱ ଓ ପିତୃମାତୃଭକ୍ତିର କଥା ଶୁଣାଇ ତାଙ୍କୁ ମହାନ୍ ଯୋଦ୍ଧାରେ ପରିଣତ କରିଥିଲେ । ପିଲାଦିନେ ଆଈମାଆମାନେ ପିଲାମାନଙ୍କୁ ପୁରାଣ କଥା ଶୁଣାଇ ସତ୍ ପଥରେ ଚଳିବାକୁ ପ୍ରବର୍ତ୍ତାଉ ଥିଲେ ।

ଆଜିର ସମାଜ କିପରି କଳୁଷିତ ହୋଇପଡ଼ିଛି, ତାହା କାହାକୁ ଅଗୋଚର ନାହିଁ । ବାପା ଓ ମାଆମାନେ ମିଛ ଓ ଶଠତାର ଆଶ୍ରୟ ନେଇ କାର୍ଯ୍ୟ କରୁଛନ୍ତି; ଫଳରେ ଏହାର କୁ-ପ୍ରଭାବ ପିଲାମାନଙ୍କ ଉପରେ ପଡୁଛି । ଦେଶ ଓ ଜାତି ବିପର୍ଯ୍ୟୟର ସମ୍ମୁଖୀନ ହେଉଛି । ଉତ୍ତମ ଦେଶ ଓ ଜାତି ଗଠନ ପିଲାମାନଙ୍କ ଶିକ୍ଷାଦୀକ୍ଷା ଉପରେ ନିର୍ଭର କରେ । ତେଣୁ ପିତାମାତା ପିଲାମାନଙ୍କୁ ଭଲ ଶିକ୍ଷା ଦେଲେ ଦେଶ ସଂସ୍କୃତିସମ୍ପନ୍ନ ହେବ ଓ ଉନ୍ନତି କରିବ, ତା' ନ ହେଲେ ଦେଶ ବିଶୃଙ୍ଖଳ ଓ ରୁଗ୍ଣ ହେବ । ପିତାମାତା ହେଉଛନ୍ତି ପିଲାର ପ୍ରଥମ ଶିକ୍ଷକ । ଶିକ୍ଷକ ହେଉଛନ୍ତି ଦ୍ୱିତୀୟ ପିତାମାତା । ଏହି କଥାକୁ ମନରେ ରଖିଲେ ଏକ ସୁସ୍ଥ ସମାଜ ଗଠନ ସମ୍ଭବ ହେବ । ଗାନ୍ଧୀ ମହାତ୍ମା ହେବା ପଛରେ ତାଙ୍କ ମାଆଙ୍କର ଅବଦାନ ଶ୍ରେଷ୍ଠ ବୋଲି କୁହାଯାଏ ।

*ଅରୁଣୋଦୟ ମାର୍କେଟ୍, କଟକ-୧୨*

---

**ବିଜ୍ଞାନ କୁଇଜ୍‌ର ଉତ୍ତର**

୧। ପଟଳ (Iris), ୨। ସବୁଜ, ୩। ସାର୍ ଫ୍ରାଙ୍କ୍ ହ୍ୱିଟିଲ୍ (Sir Frank Whittle), ଇଂଲଣ୍ଡର ଲୋକ । ୪। ଭୟେଜର-୨, ୫। ଏକସ୍‌ରେ, ୬। ଜାଗୁଆର୍, ୭। ସୂର୍ଯ୍ୟ ଓ ପୃଥିବୀର ଦୂରତ୍ୱରୁ, ୮। ଡକ୍ଟର ଏଡ୍‌ୱାର୍ଡ୍ କାସ୍‌ନର୍ (Edward Kassner), ଗୁଗୁଲ୍ (Googol)।

# ମା' ଭିତରେ ସବୁ

ଶ୍ରୀ ଶିବ ପ୍ରସାଦ ରାଉତ

ନୂଆବର୍ଷର ନୂଆଦିନ ଚାଲିଗଲା । ଦୁଇଶହ ଟଙ୍କା ବିଦ୍ୟାଳୟରେ ସାର୍ ଚାନ୍ଦା ପରିଥିଲେ ନୂଆ ସ୍ଥାନ ବୁଲିଯିବା ପାଇଁ । ଚନ୍ଦନେଶ୍ୱର ମନ୍ଦିର, ଦୀଘା, ଜ୍ୟୋତିର୍ମୟୀ ଓ ହାଓ୍ୱଡ଼ା ପୋଲ । ପିଲାଙ୍କ ମଧ୍ୟରେ ନୂତନ ଉତ୍ସାହ । ଆନନ୍ଦର କଥୋପକଥନ । ଭାବନା ରାଜ୍ୟର ସାଥୀମାନେ । ଗାଡ଼ିରେ ଯିବାବେଳେ ଆନନ୍ଦ, ଆସିଲା ବେଳେ ଆନନ୍ଦ-- ଅନୁଭୂତି ମିଶାମିଶି । ଆଉ ସେଠି ବୁଲି ଦେଖିଲାବେଳେ ଚରମ ଆନନ୍ଦର ଭାବ-ବିହ୍ୱଳତା ଛୁଇଁ ଯାଉଥିଲା ବିଦ୍ୟାଳୟ ପ୍ରତି ପ୍ରାଣକୁ । ମାତ୍ର ସୌରଭକୁ ସନ୍ତୁଳି ପକାଉଥିଲା ନିଜ ମା' ଓ ଝଡ଼ ଫେଇଲିନ୍‌ରେ ଅଧା ଭାଙ୍ଗିଯାଇଥିବା ଘରର ପରିସ୍ଥିତି । ସାଥୀଏ କହୁଥାନ୍ତି-- "ସୌରଭ କିଛି କହୁନାହୁଁ କାହିଁକି ? ଯିବୁ ନା' କ'ଣ ? କଞ୍ଜୁସ୍‌ଟାଏ ତୁରେ । ଏ ସମୟ ଏ ସୁଯୋଗ ଆଉ ଆସିବନି । ବାହାନା କରନାରେ ସୌରଭ । ଚାଲ ଯିବା, ଦେଖିବା, ଶିଖିବା, ମଜା ବି କରିବା ।"

ଜଣ ଜଣ କରି ସବୁ ପିଲା ପଇସା ଦେଇଦେଲେ । ବଡ଼ ବଡ଼ ବସ୍ ପ୍ରସ୍ତୁତ । ପ୍ରସ୍ତୁତ ଭୋଜି ଓ ଷ୍ଟଡିଟୁର୍‌ର ସମସ୍ତ ସାମଗ୍ରୀ । ପ୍ରସ୍ତୁତ ମଜଲିସ୍ କରିବାର ପ୍ରତି ଛାତ୍ର, ଛାତ୍ରୀ ଓ ଶିକ୍ଷକ, ଶିକ୍ଷୟିତ୍ରୀ; ମାତ୍ର ଏକା ଅପ୍ରସ୍ତୁତ ସୌରଭ । ମଣିଷ ହେଇ ରହିବା, ମଣିଷ ପରି ଅଧିକାର ସୌରଭର ନ ଥିଲା । ବାପା କେଉଁ ଦିନରୁ ଚାଲିଗଲେଣି । । ମା' ସହିତ ସେ । ମା' ମୂଲ ଲାଗି ଯାଏ । ପର ଘରେ




ସୌରଭ ବସ୍‌ରେ ଲଦାହେବା ପାଇଁ ପିଅନମାନଙ୍କ ସହିତ ହାଣ୍ଡି, କଡ଼ା, ପରିବା ଇତ୍ୟାଦି ଭରି ଦେଉଥାଏ। ସାଥୀମାନଙ୍କର ପାଣି ବୋତଲ ଟ୍ୟାପ୍‌ରୁ ପାଣି ଆଣି ସଜାଡ଼ି ଦେଉଥାଏ। ପିଅନମାନେ ବି ସାହାଯ୍ୟକାରୀ ଭାବେ ଗଲେ। ସୌରଭ କହିଲା--"ସାର୍ ଯାଆନ୍ତୁ, ମୁଁ ସ୍କୁଲ ଜଗିଛି।

ପାଇଟି କରେ। ପଖାଳ, ବାସି, ତୋରାଣିର ସଂସାରରେ ଅଟକି ରହେ ତାଙ୍କର ଭାଗ୍ୟ। ମା' ତା'ର ପୁରୁଷଙ୍କ ପରି ପୁରୁଷଙ୍କ ସହିତ ପର ବିଲରେ ଖରା, ବର୍ଷା, ଶୀତ, ପାଣି, କାଦୁଅରେ ମଜୁରୀ ଖଟେ। ନାରୀ ଜୀବନ ସହିପାରେନି। ଦେହରେ ଶ୍ୱାସରୋଗ, ସବୁବେଳେ ଖେଁ ଖେଁ।

ସାର୍‌ମାନେ ଦୁଇ ତିନିଥର କହିଲେଣି--"କିରେ ସୌରଭ, ମା'ଙ୍କୁ କହି ପଇସା ଆଣିଲୁନି। ତୁ ପରା ଶ୍ରେଣୀର ଭଲ ପିଲାଟା। ତୋ'ର ଏସବୁ ଦେଖିବା ଦରକାର। ଆମେ ଜାଣିଛୁ ତୋ'ର ପରିସ୍ଥିତି। ହଉ ହେଲା, ତୁ ଦୁଇଶହ ନ'ଦେ। ଦେଢ଼ଶହ ଖଣ୍ଡେ ଆଣେ। ଦେଖିବା ଚଳେଇ ଦେବା। ଜମାରୁ ନ ଦେଲେ ଅସୁବିଧା ହୋଇଯିବନି।" ସୌରଭ କହିପାରେନି ମା'ଙ୍କୁ। କେମିତି କହନ୍ତା, ମା' ଏଣେ ଖଟି ଖଟି ତନ୍ତିଆଦଉଡ଼ି ପାଲଟି ଯାଇଛି। ମରଣ ମୁହେଁ ଟାଣି ହେଇ ଚାଲିଛି। ରୋଗ ତା'ର ବଢ଼ି ଚାଲିଛି। ତହିଁକି ଦୁଇବେଳା ଦୁଇମୁଠା ଯୋଗାଡ଼ କରିବା ସମ୍ଭବ ହେଉନି।

ତା'ପରଦିନ ଭୋର ହୋଇଗଲା। ପିଲାଏ, କିଛି ଅଭିଭାବକ, ସାର୍‌ମାନେ ବସ୍‌ରେ ଭରି ହେଇଗଲେ। ବଗିଚାକୁ ଛେଳିଟିଏ ବି ଛାଡ଼ିବି ନାହିଁ।" ଗାଡ଼ି ଛାଡ଼ିଲା, ସେ ବିଦାୟ ଦେଲା ସେମାନଙ୍କୁ ହାତ ହଲେଇ।

ସୌରଭ ବୁଲିପଡ଼ି ଦେଖେ ତ, ତା' ମା ତା'ପଛକୁ ଲାଗି ଆସୁଛନ୍ତି। ନଇଁ ନଇଁ ଧଇଁସଇଁ ହୋଇ କହିଲେ --"କିରେ ତୁ ମୋତେ କିଛି କହିଲୁ ନାହିଁ କାହିଁକି ? ଏଇ ପରା ଦୁଇଶହ ଟଙ୍କା, ମୁଁ ଆଣିଥିଲି ତୁ ଯିବା ପାଇଁ।" ସୌରଭ କହିଲା--"ମୁଁ ସେଦିନ ତୋ ପାଇଁ ଔଷଧ ଆଣିବାକୁ ଦଶଟଙ୍କା ଖୋଜୁଥିଲି, ପଇସା ନାହିଁ କହିଲୁ ନା'।" ମା'କହିଲେ--"ହଁ ଯେ, ଏ ପଇସା ମୁଁ ଭଲମନ୍ଦ ପାଇଁ ସାଇତି ରଖିଥିଲି....।" ସୌରଭ କହିଲା--"ହଉ ହେଲା, ମୋ'ପାଇଁ ପରା ତୁ ଚନ୍ଦନେଶ୍ୱର ଠାକୁର, ମୋ'ପାଇଁ ତୁ ମା'ଜ୍ୟୋତିର୍ମୟୀ, ତୋ' ଅସ୍ଥିକଙ୍କାଳସାର ଏ ଦେହ ମୋ ଲାଗି ହାଓ୍ୱଡ଼ା ପୋଲ ଆଉ ତୋ'ର ଶୀତଳ କୋଳ, ପଣତ ମୋ'ପାଇଁ ଦୀଘା ସମୁଦ୍ର କୂଳ।" ଶୁଣୁଶୁଣୁ ମା' କାନ୍ଦୁଥିଲେ, ସୌରଭ କିନ୍ତୁ କାନ୍ଦୁ ନ ଥିଲା। ବେଶ୍ ଶାନ୍ତ ତ' ଥିଲା ସେ....।

*ବଛଦା, ଜଗନ୍ନାଥପୁର, ବାସୁଦେବପୁର, ଭଦ୍ରକ- ୭୫୬୦୪୬*

***



ସମସ୍ତେ କହନ୍ତି 'ନିଜର କର୍ତ୍ତବ୍ୟ କରିଯାଅ ।' କିନ୍ତୁ ଏହି କର୍ତ୍ତବ୍ୟ କଥାଟି କ'ଣ ? ଭାବିଲେ ଜଣାପଡୁଛି ଆମେ ନିଜର ଏବଂ ଅନ୍ୟର ଜୀବନରକ୍ଷା ପାଇଁ ଯାହା ସବୁଦିନଯାକ କରୁଛୁ, ତାହା ଆମର କର୍ତ୍ତବ୍ୟ । ଠିକ୍ ସମୟରେ ନିଦରୁ ଉଠିବା, ମୁହଁ ହାତ ଧୋଇ କ'ଣ ଦି'ଟା ଖାଇ ପଢ଼ିବସିବା, ସ୍କୁଲକୁ ଯିବା, ଖେଳିବା ଓ ପୁଣି ଖାଇପିଇ ଶୋଇବା– ଏସବୁ ଆମର କର୍ତ୍ତବ୍ୟ ବୋଲି ଜଣାଯାଉଛି । ତା' ସଙ୍ଗେ ସଙ୍ଗେ ଅନ୍ୟ ପାଇଁ ମନୁଷ୍ୟ ଯାହା କରୁଛି, ତାକୁ ମଧ୍ୟ କର୍ତ୍ତବ୍ୟ କୁହାଯିବ । ପିତାମାତା ତାଙ୍କ ପିଲାଙ୍କ ପାଇଁ ଯାହା କରୁଛନ୍ତି, ଆମେ ଆମ ଭାଇଭଉଣୀଙ୍କ ପାଇଁ ଯେଉଁ ପରିଶ୍ରମ କରୁଛୁ, ତାହା ମଧ୍ୟ ଆମର କରିବା ଉଚିତ । ଏସବୁ ପାରିବାରିକ କର୍ତ୍ତବ୍ୟ ଛଡ଼ା ଅନ୍ୟ କାମ ମଧ୍ୟ ଅଛି, ଯାହାଦ୍ୱାରା ମନୁଷ୍ୟ ନିଜ ପେଟ ପୋଷିବା ସାଙ୍ଗକୁ ଅନ୍ୟର ମଧ୍ୟ ସେବା କରେ; ଯେପରି ଗାଡ଼ିଚାଳକ, ଡାକବାଲା, ଡାକ୍ତର, ସେବିକା, ଶିକ୍ଷକ, ସାମ୍ବାଦିକ, କୃଷକ ପ୍ରଭୃତି । ଏମାନେ ସମୟ ନଷ୍ଟ ନ କରି ଏ ସବୁ କାମରେ ନିଯୁକ୍ତ ରହି ସ୍ୱ ସ୍ୱ କର୍ତ୍ତବ୍ୟ କରୁଛନ୍ତି । ଇଂରାଜୀରେ ଏ ବିଷୟରେ ଗୋଟିଏ ସୁନ୍ଦର ପଦ ଅଛି ।

'I slept and dreamt
that life is beauty
I woke and found
that life is duty.

ଏହାର ଅର୍ଥ : ମୁଁ ଶୋଇ ଶୋଇ ସ୍ୱପ୍ନ ଦେଖିଲି ଯେ ଜୀବନଟା ଭାରି ସୁନ୍ଦର, ଭାରି ମଜା; କିନ୍ତୁ ନିଦରୁ ଉଠି ଦେଖିଲି ଜୀବନଟା ଖାଲି କର୍ତ୍ତବ୍ୟରେ ପୂର୍ଣ୍ଣ । କୁହାଯାଏ ଏହି duty ଶବ୍ଦଟି 'due' ରୁ ଆସିଛି, ଅର୍ଥାତ୍ ଯାହା ଆମକୁ ନିଶ୍ଚୟ କରିବାକୁ ହେବ । ଏହା ଇଚ୍ଛାଧୀନ ନୁହେଁ । ସରକାରଙ୍କୁ ଖଜଣା ଦେବାପରି ବାଧ୍ୟତା-ମୂଳକ । ସତରେ କ'ଣ ତାହା ନୁହେଁ ? ସ୍ୱାସ୍ଥ୍ୟରକ୍ଷାର ନିୟମ ମାନିବା, ଯଥା ସମୟରେ ଯେଉଁ କାମ କରିବା, ପିତାମାତା ଓ ଗୁରୁଜନଙ୍କୁ ମାନିବା, ନିୟମ ଓ ଶୃଙ୍ଖଳା ମାନି ଚଳିବା, ସମସ୍ତଙ୍କୁ ଭଲପାଇବା, ଶକ୍ତି ଅନୁସାରେ ସମାଜର ମଙ୍ଗଳ ପାଇଁ କାମ କରିବା ଇତ୍ୟାଦି ଆମର ଅବଶ୍ୟ କର୍ତ୍ତବ୍ୟ । ସେହିପରି, ଏସବୁର ଓଲଟା କିଛି କରିବା ଆମର ଉଚିତ ନୁହେଁ । ବୃଥା ସମୟ ନଷ୍ଟ କରିବା, ସ୍ୱାସ୍ଥ୍ୟରକ୍ଷାର ନିୟମ ଲଙ୍ଘନ କରିବା, ଗୁରୁଜନଙ୍କୁ ଅବଜ୍ଞା କରିବା, ଅନ୍ୟକୁ ଘୃଣା କରିବା, ନିୟମ ଓ ଶୃଙ୍ଖଳା ଭାଙ୍ଗିବା, ଦେଶର ଅମଙ୍ଗଳ ହେବାଭଳି କାମ କରିବା ଇତ୍ୟାଦି ଆମର ଅ-କର୍ତ୍ତବ୍ୟ ରୂପେ ଗଣାଯାଏ ।

କୁମାରୀ ଫ୍ଲୋରେନ୍‌ସ ନାଇଟିଙ୍ଗେଲ୍ କ୍ରିମିଆ ଯୁଦ୍ଧ କ୍ଷେତ୍ରକୁ ଯାଇ ଆହତ ରୋଗୀଙ୍କର ସେବା କରିଥିଲେ । ଜର୍ଜ ୱାଶିଂଟନ୍ ନିଜ ବଗିଚାରୁ ଚେରୀ ଗଛଟିକୁ କାଟିଥିଲେ ବୋଲି ମାନିଯାଇଥିଲେ– ଏସବୁ ହେଲା ନୈତିକ କର୍ତ୍ତବ୍ୟ । ଯେପରି ଦେଖାଯାଉଛି, ବିଭିନ୍ନ କର୍ତ୍ତବ୍ୟ ମଧ୍ୟରେ କାହାରି କାହା ସଙ୍ଗେ ବିରୋଧ ନାହିଁ । ଉପରେ ଯେଉଁସବୁ କାମର ସୂଚନା ଦିଆଗଲା, ସେଗୁଡ଼ିକ ପରସ୍ପରର ସାହାଯ୍ୟକାରୀ; କିନ୍ତୁ ବେଳେ ବେଳେ ଏପରି କାମ ଆସେ, ଯାହା ପରସ୍ପରର ବିରୋଧୀ । ଦୁଇଟିଯାକ କର୍ତ୍ତବ୍ୟକୁ ଏକ ସଙ୍ଗେ ପାଳି ହୁଏ ନାହିଁ । ଦୁଇଟି ଗୋଟିଏ ଉଦାହରଣ ଦେଲେ ଏହା ସ୍ପଷ୍ଟ ହେବ । ଧର, ତୁମର ବାପା କଠିନ ପରିଶ୍ରମ

କରି ଅର୍ଥ ଉପାର୍ଜନ କରୁଛନ୍ତି; କିନ୍ତୁ ସେ ଏତେ କୃପଣ ଯେ ମାଆଙ୍କ ସୁବିଧା ପାଇଁ ପଇସାଟିଏ ଖର୍ଚ୍ଚ କରୁନାହାନ୍ତି କିମ୍ବା ଏହାର ବିପରୀତ ଘଟୁଛି, ଅର୍ଥାତ୍ ମାଆ ବଦ୍‌ଖର୍ଚ୍ଚ କରି ଘରର ଧନ ନଷ୍ଟ କରୁଛନ୍ତି । ତୁମେ ଏସବୁ ଦେଖୁଛ ଓ ଜାଣୁଛ । ବାପା ଓ ମାଆଙ୍କୁ ସନ୍ତୁଷ୍ଟ କରିବା ତୁମର କର୍ତ୍ତବ୍ୟ; କିନ୍ତୁ ଏଠାରେ ସେ ଦୁଇଜଣଙ୍କୁ କିପରି ସନ୍ତୁଷ୍ଟ କରିହେବ ?

ଆଉ ଗୋଟିଏ ଦୃଷ୍ଟାନ୍ତ ନିଆଯାଉ । ବସ୍ ଦୁର୍ଘଟଣାରେ ତୁମର ଜଣେ ସାଙ୍ଗ ଆହତ ହେଲା । ଅନ୍ୟ ପିଲାମାନେ ତୁମକୁ ଡାକୁଛନ୍ତି ବସ୍ ପୋଡ଼ିବାକୁ କିମ୍ବା ଭଙ୍ଗାରୁଜା କାମ କରିବାକୁ । ତୁମେ ସେମାନଙ୍କ ସଙ୍ଗେ ଯୋଗଦେବ କି ନାହିଁ ? ତୁମର ଜଣେ ଅନ୍ତରଙ୍ଗ ବନ୍ଧୁ କୌଣସି ଏକ ଅପରାଧରେ ଲିପ୍ତ ଥିବାର ତୁମେ ଜାଣିଛ, ପୋଲିସ ଆଗରେ ତାହା ପ୍ରକାଶ କରିବ କି ନା ? ଏହିପରି ବହୁ ଘଟନାରେ ଦୁଇଟି କର୍ତ୍ତବ୍ୟ ମଧ୍ୟରେ ବିରୋଧ ଆସିବାରୁ ମନରେ ଦ୍ୱନ୍ଦ୍ୱ ଜାତ ହୁଏ । କେଉଁଟି କରିବି ବା ନ କରିବି, ତାହା ସହଜରେ ସ୍ଥିର କରି ହୁଏ ନାହିଁ; କିନ୍ତୁ ଏସବୁ କ୍ଷେତ୍ରରେ ମହତ୍ତର କର୍ତ୍ତବ୍ୟଟିକୁ ବାଛିନେଲେ ମନରେ ଅସନ୍ତୋଷ ରହେନାହିଁ ।

ସତ୍ୟବାଦିତା ଏକ ମହାନ୍ ନୀତି । ଏଣୁ ମିଛ କହି ବନ୍ଧୁକୁ ରକ୍ଷା କରିବା ଏବଂ ସତ୍ୟ କହିବା– ଏ ଦୁଇଟି ଭିତରେ ସତ୍ୟର ପଥ ବାଛିନେବା ହିଁ ଉଚିତ । ମହାତ୍ମା ଗାନ୍ଧୀ ସରକାରୀ ଆଇନ ଲଙ୍ଘନ କରି ସମୁଦ୍ରରୁ ଲୁଣ ମାରିଥିଲେ । ଇଂରେଜ ସରକାରର ଆଇନ ମାନିବା ଅପେକ୍ଷା ଦେଶବାସୀଙ୍କର ମଙ୍ଗଳ କରିବା ମହତ୍ତର ବୋଲି ସେ ବିଚାରିଥିଲେ । ଆମର ବିଚାର ସେହିପରି ହେବା ଉଚିତ । ସମାଜରେ ଆମର ଜଣେ ମୁରବି ସ୍ଥାନୀୟ ବ୍ୟକ୍ତି ଯଦି ଅନ୍ୟାୟରେ କୌଣସି ଅସହାୟ ବ୍ୟକ୍ତିକୁ ପୀଡ଼ା ଦେଉଥିବାର ଆମେ ଦେଖିବା, ତେବେ ତା'ର ପ୍ରତିବାଦ କରିବା ଉଚିତ । ଏସବୁ ସ୍ଥଳରେ ଚୁପ୍ ରହିବା ଠିକ୍ ନୁହେଁ । ସ୍ଥିର ମନରେ ବିଚାର କରି ନ୍ୟାୟ ଓ ସତ୍‌ମାର୍ଗକୁ ବାଛିନେବା ହିଁ କର୍ତ୍ତବ୍ୟ । ଆମେ ସମସ୍ତେ ଯଦି ଏଇ ଭାବରେ ପାରିବାରିକ, ସାମାଜିକ ଓ ନୈତିକ କର୍ତ୍ତବ୍ୟ ପାଳନ କରିବା, ତେବେ ଦେଶରୁ ବହୁ ଦୁର୍ନୀତି ଓ ଦୁଷ୍କର୍ମ ଦୂର ହୋଇଯିବ ।

—ରାମକୃଷ୍ଣ ନନ୍ଦ

(ପୁରୁଣା ସଂସାରରୁ)



## ମୂତ୍ରାଶୟର ସମସ୍ୟା

ଆମର ମୂତ୍ରାଶୟ ଆମ ରକ୍ତକୁ ପରିଷ୍କାର କରିବା ପାଇଁ ସେଥିରୁ ଲବଣ ଅଂଶ ଓ ଅଦରକାରୀ ଜୀବାଣୁକୁ ଛାଣିଥାଏ । ବେଳେବେଳେ ଏହି ଲବଣ ଅଂଶ ଆମ ମୂତ୍ରାଶୟରେ ଜମିଯାଏ ଏବଂ ଏହାକୁ ବାହାର କରିବା ପାଇଁ ଆମେ ଚିକିତ୍ସା ଆବଶ୍ୟକ କରୁ।

ଏଥିପାଇଁ ଶସ୍ତା, ସହଜ ଓ ସରଳ ଉପାୟ ହେଲା-- କିଛି ଧନିଆପତ୍ରକୁ ପରିଷ୍କାର କରି ଛୋଟ ଛୋଟ କରି କାଟି ଗୋଟିଏ ପାତ୍ରରେ ରଖନ୍ତୁ। ସେଥିରେ ବିଶୁଦ୍ଧ ପାଣି ଭର୍ତ୍ତି କରି ତାକୁ ୧୦ ମିନିଟ୍ ପର୍ଯ୍ୟନ୍ତ ସିଝାଇ ଥଣ୍ଡା କରନ୍ତୁ। ତା'ପରେ ସେହି ସିଝାପାଣିକୁ ଛାଣି ରେଫ୍ରିଜରେଟରରେ ରଖନ୍ତୁ।

ପ୍ରତ୍ୟେକ ଦିନ ଏଥିରୁ ଗୋଟିଏ ଗ୍ଲାସ୍ ପିଅନ୍ତୁ। ଦେଖିବେ, ଏହାଦ୍ୱାରା ଆପଣଙ୍କ ମୂତ୍ରାଶୟରେ ଜମିଥିବା ସମସ୍ତ ଜୀବାଣୁ ଓ ଲବଣ ପରିସ୍ରାରେ ବାହାରି ଆସିବ। ଆପଣ ଏହା ନିଜେ ଅନୁଭବ କରିପାରିବେ।

ଧନିଆ ହେଉଛି ଏକ ଉପାଦେୟ ପଦାର୍ଥ, ଯାହା ଆମ ରକ୍ତକୁ ପରିଷ୍କାର କରିଥାଏ। ❖❖



## ଆମ ଜେଜେ

ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାରଣା

ପଞ୍ଚସ୍ତରୀ ବର୍ଷ ହେଲା ବୟସ
ପାକୁଆ ପାଟିକି ଧବଳ କେଶ
ଆମରି ଜେଜେ
ପାହାନ୍ତା ପହର ବେଳକୁ ଖୋଜିଲେ
ଉଠି ପଡ଼ିଥାନ୍ତି ନ ଥା'ନ୍ତି ଶେଯେ।

ନିତ୍ୟକର୍ମ ବେଗେ ଦିଅନ୍ତି ସାରି
ସକାଳ ବୁଲାରେ ଯା'ନ୍ତି ବାହାରି
ଚାଲିଚାଲିକା
ବଙ୍କୁଲି ବାଡ଼ିକୁ ହଲାଇ ହଲାଇ
ଫେରନ୍ତି ଘରକୁ ବୁଲିବୁଲିକା ।

ଜଳଖିଆ ବୋଉ ଦିଅନ୍ତି ଆଣି
ଖାଇସାରି ଜେଜେ ପିଅନ୍ତି ପାଣି
ଚଷମା ପିନ୍ଧି
ଦାଣ୍ଡ ଘରେ ବସି ଖବରକାଗଜ
କେତେ ସେ ପଢ଼ନ୍ତି ଓଡ଼ିଆ ହିନ୍ଦୀ ।

ଘରୁ ବାଲ୍‌ଟି ମଗ୍ ବାଡ଼ିକୁ ଆଣି
ଗଛ ପତରରେ ଦିଅନ୍ତି ପାଣି
ଲାଗିପଡ଼ିକି
କେତେ ଫଳଫୁଲ ଗଛ ଲଗାଇ ସେ
ସଜାଡ଼ି ଅଛନ୍ତି ଆମ ବାଡ଼ିକି ।

ରୋଜାଲିସା ମୋର ସାନ ଭଉଣୀ
ଜେଜେଙ୍କର ସିଏ ଗେହ୍ଲା ନାତୁଣୀ
ଅ' ଆ' ଲେଖେ
ଅ'ମାନେ ଅଜା ଆ' ମାନେ ଆଈ
ଜେଜେଙ୍କଠୁ ସିଏ ଅକ୍ଷର ଶିଖେ ।

ଭଲ ଉପଦେଶ ଦିଅନ୍ତି ଜେଜେ
କହନ୍ତି ଯାହା ସେ କରନ୍ତି ନିଜେ
ଭାରି ବିବେକ
ଆମର ମଙ୍ଗଳ କାମନା କରନ୍ତି
ସେନେହ ଆଦର ଦେଇ ଅନେକ ।

ହସାନ୍ତି ଆମକୁ ନିଜେ ହସନ୍ତି
ମଜା ଗପ କହି ମନ ତୋଷନ୍ତି
ଘରର ଇଷ୍ଟ
ବାପାଙ୍କ ବାପା ସେ ଦେବାନାହିଁ କେବେ
ଜେଜେଙ୍କ ମନରେ ଜମାରୁ କଷ୍ଟ ।

*ମଙ୍ଗଳା ନଗର, ଲେନ୍-୧, ଖୋର୍ଦ୍ଧା-୭୫୨୦୫୫*



ଛତ୍ରଓଗାଁ

# 'ଦି ଜଙ୍ଗଲ' ବୁକ୍'ରେ ଭାରତୀୟ ବାଳକ 'ନୀଲ ସେଠୀ'

ଶ୍ରୀ କାଞ୍ଚି ନାରାୟଣ ମହାନ୍ତି

'ମୋଗ୍‌ଲି' ନାମକ ଗୋଟିଏ ବାଳକ ଜଙ୍ଗଲରେ ହଜିଯାଇଛି। ତାକୁ ମାତ୍ର ଦଶବର୍ଷ। ହଜିଗଲା ପରେ ତାକୁ ଲାଳନପାଳନ କରିଛନ୍ତି ଜଙ୍ଗଲର ଗଧିଆଦଳ। କାହାଣୀ ଭିତରେ ଜଙ୍ଗଲର ବିଭିନ୍ନ ଜୀବଜନ୍ତୁଙ୍କ ସଂପର୍କରେ, ମଣିଷପଶୁର ସଂପର୍କରେ ନାନା ବିଷୟର ବର୍ଣ୍ଣନା କାହାଣୀର ପାଣ୍ଡୁଲିପିରେ ରହିଛି। ପଶୁମାନେ ମଧ୍ୟ ମୋଗ୍‌ଲିକୁ ମାନି ଚଳୁଛନ୍ତି। ଶେଷକୁ ଜଙ୍ଗଲ ଭିତରେ ସେ ସବୁ ପଶୁଙ୍କ ଭିତରେ 'ହୀରୋ', ପୁଣି 'ସୁପର ଶକ୍ତିମାନ୍ ହିରୋ' ହୋଇଯାଏ। ଶେଷକୁ ଫେରିଆସେ ଗାଁ'କୁ।

ଏହି ଛବିରେ ଆକସନ୍ ଆଉ ଆନିମେସନ୍ ମିଶି ଆକର୍ଷକ କରଯାଇଛି। ପିଲାମାନଙ୍କର କାର୍ଟୁନ୍‌ଠାରୁ ଏହା ସବୁଠୁ ବେଶି ଲୋକପ୍ରିୟ ହେବା ନିଶ୍ଚିତ।

ଅବଶ୍ୟ 'ଜଙ୍ଗଲ ବୁକ୍' ଉପରେ ମୋଗ୍‌ଲି ଚରିତ୍ରକୁ ଆନିମେସନ୍‌ରେ ରୂପାୟିତ କରାଯାଇଅଛି। ଜଙ୍ଗଲ ବୁକ୍‌ସର ମୋଗଲି ଚରିତ୍ର ସଂପର୍କରେ ଭାରତୀୟ ବାଳକବାଳିକାମାନେ ଉତ୍ତମ ରୂପେ କିଛିବର୍ଷ ପୂର୍ବରୁ ପରିଚିତ। ଅଲରା, ନୁଖୁରା ବାଳ, ଖାଲି ଦେହ-- ପୋଷାକ କହିଲେ ଖାଲି ଦେହରେ ଖଣ୍ଡେ ଛୋଟ ପ୍ୟାଣ୍ଟ୍, ଆକସନ୍ ଓ ଆଖିର କଥାବାର୍ତ୍ତା। ସବୁ ପଶୁଙ୍କ ସହିତ ଭଲ ବୁଝାମଣା ନେଇ ସେ ରାଜା ଭଳି ସେମାନଙ୍କ ସହିତ ଅତି ଦର୍ପରେ ରହୁଥିଲା। ହିଂସ୍ର ପଶୁମାନେ ମଧ୍ୟ ତା'ର କିଛି କ୍ଷତି କରିବା କଥା ଚିନ୍ତା ବି କରୁ ନ ଥିଲେ।

ଏବେ ଆନିମେସନ୍ ମୋଗ୍‌ଲି ସ୍ଥାନରେ 'ନୀଲ୍ ସେଠୀ' ଅଭିନୟ କରିବେ। ଯାହାଙ୍କୁ କାଲି କେହି ଜାଣି ନ ଥିଲେ, ସେ ଆଜି ବିଶ୍ୱସମୁଦାୟ ପାଇଁ କୁନି ହୀରୋ ପାଲଟିଗଲେ । ମାତ୍ର ଦଶବର୍ଷର ପିଲାର ମଥାରେ ସୁନାକଳସ ଢଳାଗଲା। କେବଳ ଏଇ ଯୋଜନା ପାଇଁ ନୁହେଁ, ଏହି ଥ୍ରି.ଡି. ୨୦୧୫ ଅକ୍ଟୋବର ୯ରେ ମୁକ୍ତିଲାଭ କରିବା ପରେ ନୀଲ୍ ସେଠୀଙ୍କର ଭାଗ୍ୟ- ଆଲୋକରେ ଅଶେଷ ସୌଭାଗ୍ୟର ବର୍ଷା ନ ହେବ କାହିଁକି ? ନିର୍ମାତା ନିର୍ଦ୍ଦେଶକମାନେ ନୀଲ୍‌ଙ୍କ ପଛରେ ଧାଡ଼ି ଲାଗିବେ। ଅଭିନୟ, ସଂଗୀତ, ସାହିତ୍ୟ-- ଏମିତି ଗୋଟିଏ


ନୀଲ୍ ସେଠ୍

ଗୋଟିଏ ମାର୍ଗ, ଯାହା ପ୍ରତିଭାକୁ ସୁନାମ ଓ ସଂପଦରେ ପରିପୂର୍ଣ୍ଣ କରେ।

ଭାରତୀୟ ବଂଶୋଦ୍ଭବ ୧୦ ବର୍ଷୀୟ ନୀଲ୍ ସେଠୀ ଆମେରିକା, ଇଂଲଣ୍ଡ, ନ୍ୟୁଜିଲାଣ୍ଡ, କାନାଡ଼ା ଇତ୍ୟାଦି ଦେଶରୁ ଆସିଥିବା ହଜାର ହଜାର ବାଳକଙ୍କୁ ମନୋନୟନରେ ପଛରେ ପକାଇ ବିଚାରକମାନଙ୍କ ଦ୍ୱାରା ମନୋନୀତ ହୋଇଛନ୍ତି। ବାପାମାଆଙ୍କ ସହିତ ସେ ନ୍ୟୁୟର୍କରେ ରହନ୍ତି। କିଶୋର ବାଳକ ନୀଲ୍ ସେଠୀଙ୍କର ଏହା ପ୍ରଥମ ଚଳଚ୍ଚିତ୍ର।




ରୁଡୟାର୍ଡ୍ କିପ୍‌ଲିଙ୍ଗ୍ ଏହାର ଲେଖକ। ଚଳଚ୍ଚିତ୍ରର ନିର୍ଦ୍ଦେଶକ ଜନ୍ ଫେବ୍ର୍ୟୁର୍ । ଏହାର ପଟ୍ଟକଥା ଲେଖିଛନ୍ତି ଜଷ୍ଟିନ୍ ମାର୍କସ୍। ନିର୍ଦ୍ଦେଶକ ତାଙ୍କ ମତ ରଖିଛନ୍ତି ଯେ ଛବିରେ ସବୁକିଛି ଆନିମେସନ୍ ହେଉଥିଲାବେଳେ, ସମୁଦାୟ ଚଳଚ୍ଚିତ୍ରଟିରେ ଜଣେ ହିଁ ଜୀବନ୍ତ ଚରିତ୍ର ଅଭିନେତା, ଯିଏ କି ସବୁକିଛି। ତାଙ୍କରି ଉପରେ ସବୁ



ଜଷ୍ଟିନ୍ ମାର୍କସ୍

ସଫଳତା ନିର୍ଭର କରେ। ମୋଗ୍‌ଲି ଚରିତ୍ରଟିକୁ ଚୟନ କରିବା ପାଇଁ ବହୁ ପ୍ରତିରୋଧର ସାମ୍ନା କରିବାକୁ ପଡ଼ିଥିଲା। କାରଣ ଏଥିରେ କେବଳ ଚରିତ୍ର ଓ ଚେହେରା ନୁହେଁ, ସାହସିକତା, ପ୍ରତିଭା, ବୁଦ୍ଧିମତ୍ତା ଆଉ ସବୁକିଛି ହୃଦ୍‌ବୋଧକୁ ଆଣିପାରୁଥିବା ବାଳକଟିଏ ପାଇବା ଥିଲା ଅତି ସତର୍କତାପୂର୍ଣ୍ଣ ଆଉ ତାହା ମଧ୍ୟ ବାସ୍ତବିକ ସଫଳ ହୋଇଛି। ନୀଲ୍ ସେଠୀଙ୍କ ଉପରେ ସମୁଦାୟ ଛବିର; ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅଭିନୟ ଓ ସଫଳତା ସଂପୂର୍ଣ୍ଣ ଭାବେ ନିର୍ଭର କରୁଛି।

ନୋବେଲ୍ ପୁରସ୍କାର ବିଜେତା ଇଂରାଜୀ ଲେଖକ ରୁଡ୍‌ୟାର୍ଡ଼ କିପଲିଙ୍ଗ୍‌ଙ୍କର କାହାଣୀ ସଂକଳନର ଅଂଶ ହେଲା 'ଦି ଜଙ୍ଗଲ ବୁକ୍'। ଏହାର ନିର୍ମାଣ ୱାର୍ଲଡ୍ ଡିସନୀ ଷ୍ଟୁଡିଓରେ ଆରମ୍ଭ ହେବ।



ଚଳଚ୍ଚିତ୍ରର ମୁଖ୍ୟ ଚରିତ୍ର ଭାବେ ଅଭିନୟ କରିବାକୁ ନୀଲ୍ ସେଠୀ ଚୟନ ହେବା ଭାରତୀୟମାନଙ୍କ ପାଇଁ ଗୌରବମୟ ସମାଚାର। ଏହି ଚୟନ ନୀଲ୍‌ଙ୍କ ଭବିଷ୍ୟତକୁ କେତେ ଯେ ଶୀର୍ଷକୁ ନେବ, ତାହା ସ୍ପଷ୍ଟ ଜଣାଯାଏ।

ଭାରତୀୟ ତଥା ଓଡ଼ିଶାର ବାଳକବାଳିକାମାନଙ୍କ ପାଇଁ ଆଗକୁ ବଢ଼ି ଯେ କୌଣସି କ୍ଷେତ୍ରରେ ଦେଶ ପାଇଁ, ଜାତି ପାଇଁ କିଛି କାମ କରି ଶ୍ରେଷ୍ଠତ୍ୱ ଆଣିବା ପାଇଁ ନୀଲ୍ ସେଠୀ ପରି ଆଶାବାନ୍ ହେବା ଉଚିତ। ଗୋଟିଏ ପାଦ ଆଗେଇଯିବା ଅର୍ଥ ଆମେ ସଫଳତାର ନିକଟବର୍ତ୍ତୀ ହେଉଛୁ। ତେଣୁ ଆଗେଇଯିବା ଜରୁରୀ।

*ଆଶ୍ରମ, ଶ୍ରୀ ବିହାର କଲୋନୀ, ତୁଳସୀପୁର, କଟକ- ୮*




# ଶ୍ରୀଶକ୍ତି ସୁପରଫାଷ୍ଟ୍ ଏକ୍ସପ୍ରେସ୍

ତୀଖ ପାହାଡ଼ର ଦୁର୍ଗମତା, କଠୋର ପାହାଡ଼ୀ ଶଯ୍ୟାର ପଥ, ନିମ୍ନରେ ଭୟଙ୍କର ଗଭୀରତାର ଦୃଶ୍ୟ ସହିତ ସାମିଲ ହୋଇଛି ଆମର ନୂତନ ରେଳ ଶ୍ରୀଶକ୍ତି ସୁପରଫାଷ୍ଟ୍ ଏକ୍ସପ୍ରେସ୍ । ଆମେମାନେ ଚୀନାମାନଙ୍କର ଇଞ୍ଜିନିୟରିଂ କୃତିତ୍ୱର ଚମତ୍କାରିତାକୁ ଉପଭୋଗ କରି ଆସୁଥିଲେ । ବର୍ତ୍ତମାନ ଆସନ୍ତୁ, ଆମେ ଆମ ଭାରତୀୟ ଇଞ୍ଜିନିୟରମାନଙ୍କର କୃତିତ୍ୱରେ ସମଭାଗୀ ହେବା ।

ମହାଲକ୍ଷ୍ମୀଙ୍କ ଅବତାର ନେଇ ଜନ୍ମିଥିବା କୁମାରୀ ନାମ୍ନୀ କନ୍ୟା ତା'ର ନିଜର ଜ୍ଞାନ ଓ ଚେତନାର ଅନ୍ୱେଷଣରେ ଘଞ୍ଚ ଜଙ୍ଗଲ ପଥରେ ପାଦ ଦେଉଥିଲା । ସେଠାରେ ଘୋର ତପସ୍ୟାରେ ସେ ନିମଗ୍ନ ରହିଲା । ତା'ର ନାମ ହେଲା 'ବୈଷ୍ଣବୀ' । ତ୍ରିକୂଟ ପାହାଡ଼ରେ ତାର ତପସ୍ୟାକାଳ ମଧ୍ୟରେ ସେ ଚଉଦବର୍ଷ ବନବାସରେ ଥିବା ଶ୍ରୀରାମଙ୍କୁ ଭେଟିଲା ଏବଂ ତାଙ୍କ ମଧ୍ୟରେ ଲୀନ ହେବାପାଇଁ ଅନୁରୋଧ କରିଥିଲା । ଶ୍ରୀରାମ ନାସ୍ତିସୂଚକ ବାଣୀ ଶୁଣାଇ କହିଲେ– ଏ ସମୟ ସେଥିପାଇଁ ଅନୁକୂଳ ନୁହେଁ । ତେଣୁ ସେ ଏହିଠାରେ ହିଁ ଆଶ୍ରମ କରି ଗରିବ, ଅବହେଳିତ, ନିଃସହାୟ ଜନସାଧାରଣଙ୍କ ସେବା କରିବା ପାଇଁ ଶ୍ରୀରାମ ଉପଦେଶ ଦେଇଥିଲେ ।

ସେହି ସମୟରେ ତାନ୍ତ୍ରିକ ଗୋରେଖନାଥ ତାଙ୍କର ପ୍ରିୟ ଶିଷ୍ୟ ଭୈରୋନାଥକୁ ବୈଷ୍ଣବୀଙ୍କର ତପସ୍ୟାର ସିଦ୍ଧି ଓ ସତ୍ୟତା ପର୍ଯ୍ୟବେକ୍ଷଣ ପାଇଁ ପଠାଇଲେ । ଭୈରୋନାଥ ବୈଷ୍ଣବୀଙ୍କୁ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହେଲା ଓ ବିବାହର ପ୍ରସ୍ତାବ ଦେଲା । ସେଥିରେ ବୈଷ୍ଣବୀ ରାଜି ନ ହେବାରୁ ଭୈରୋନାଥ କ୍ରୁଦ୍ଧ ହୋଇ ବୈଷ୍ଣବୀଙ୍କର ପଶ୍ଚାତ୍‌ଧାବନ କଲା ଏବଂ ବୈଷ୍ଣବୀ ଅନ୍ୟ ଉପାୟ ନ ପାଇ ଭୈରୋନାଥଙ୍କର ଶିର ଛେଦନ କଲେ ।

ଏହି ସମୟରେ ଭୈରୋନାଥର ଜ୍ଞାନ ଉଦୟ ହେଲା ଓ ସେ ତାର କୃତ ପାପ ପାଇଁ ମାତା ବୈଷ୍ଣବୀଙ୍କ ଠାରେ କ୍ଷମାଭିକ୍ଷା କଲା । ବୈଷ୍ଣବୀ ତାହା ପ୍ରତି ସଦୟ ହୋଇ ଏହି ବର ଦେଲେ ଯେ ଯେଉଁ ଭକ୍ତମାନେ ଦେବୀ ଦର୍ଶନ ପାଇଁ ଆସିବେ, ସେମାନେ ଭୈରୋନାଥଙ୍କୁ ଦର୍ଶନ କଲାପରେ ତାଙ୍କର ଏ ଯାତ୍ରା ପୂର୍ଣ୍ଣତା ଲାଭ କରିବ । ସେହିଠାରେ ହିଁ ବୈଷ୍ଣବୀ ପୂର୍ବର ମାନବୀ ରୂପ ତ୍ୟାଗ କରି ସେହିଠାରେ ଗୋଟିଏ ୫ ଫୁଟ ୬ଇଞ୍ଚ ଉଚ୍ଚର ଗୋଟିଏ ଶିଳାର ରୂପ ନେଇ ସମାଧିସ୍ଥ ହେଲେ । ଏହି ଶିଳାର ତିନୋଟି ଶିର ଏବଂ ଏହି ଗୁମ୍ଫାଟି ମାତା ବୈଷ୍ଣୋଦେବୀ ଗୁମ୍ଫା ନାମରେ ଖ୍ୟାତ ହେଲା ଓ ସମସ୍ତେ ଏହାକୁ ମାତା ବୈଷ୍ଣୋଦେବୀ ଗୁମ୍ଫା ନାମରେ ପୂଜା କଲେ । ଏହା ଭାରତର ଦ୍ୱିତୀୟ ତୀର୍ଥ ରୂପେ ପରିଗଣିତ ହେଲା (ପ୍ରଥମ ହେଲା ତିରୁମଲ୍ଲା ଭେଙ୍କଟେଶ୍ୱର ମନ୍ଦିର) । ଏହି ଗୁମ୍ଫା ବା ପୀଠରେ ମହାସରସ୍ୱତୀ, ମହାଲକ୍ଷ୍ମୀ ଓ ମହାକାଳୀ ଏକତ୍ର

ବିରାଜମାନ ହେଲେ । ପ୍ରତିଦିନ ଲକ୍ଷ ଲକ୍ଷ ଭକ୍ତ କଟରାଠାରୁ ପାଦରେ ଚାଲି ଚାଲି ବା ଗଧ, ଖଚର ପିଠିରେ ଯାଇ ଦେବୀଙ୍କୁ ଦର୍ଶନ କରନ୍ତି ଏବଂ ବାବା ଭୈରୋନାଥଙ୍କ ଦର୍ଶନ ପରେ ହିଁ ସେମାନଙ୍କର ଯାତ୍ରା ସଫଳତା ଲାଭ କରିଥାଏ ବୋଲି ଭକ୍ତମାନଙ୍କର ବିଶ୍ୱାସ ରହିଛି ।

ଏହି ପୀଠଟି ୧୯୦୦ ମିଟର ଉପରେ ଅବସ୍ଥିତ । କଟରାର ଅବସ୍ଥିତି ୨୭୬୨ ମିଟର ଉଚ୍ଚରେ । କଟରାଠାରୁ ପୀଠର ଦୂରତା ୧୩ କି.ମି. । ସେହି ପୀଠକୁ ଯିବାପାଇଁ ହେଲିକପ୍ଟରର ବ୍ୟବସ୍ଥା ମଧ୍ୟ ରହିଛି । ଚଳିତବର୍ଷ ଜୁଲାଇ ୯ ତାରିଖରେ ଦିଲ୍ଲୀଠାରୁ କଟରା ପର୍ଯ୍ୟନ୍ତ ଏକ ନୂତନ ରେଳପଥ ସଂପୂର୍ଣ୍ଣ କରାଯାଇଛି ।

ଏହି ନୂତନ ରେଳପଥ ନିର୍ମାଣରେ ଆମ ଭାରତର କୁଶଳୀ ଇଞ୍ଜିନିୟର ଓ ତାଙ୍କର ଦକ୍ଷତାପୂର୍ଣ୍ଣ ଚିନ୍ତାଧାରାକୁ ରୂପ ଦେଇଛି ଏହି ଦୁର୍ଗମ ରେଳପଥ । ପାହାଡ଼ କଡ଼େ କଡ଼େ ଅଙ୍କବଙ୍କା ରାସ୍ତା ତଥା ସୁଡ଼ଙ୍ଗ ମଧ୍ୟ ଦେଇ ରେଳପଥ ନିର୍ମାଣ କରିବା ପାଇଁ ଆମର ଇଞ୍ଜିନିୟର ତଥା ଆମର ଶ୍ରମିକମାନଙ୍କୁ କେତେ ଯେ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିବ, ତା'ର କଳନା କରିହୁଏନି । ଏହି ରେଳପଥକୁ ମାତା ବୈଷ୍ଣୋଦେବୀଙ୍କୁ ଉତ୍ସର୍ଗ କରାଯାଇଛି ।

---

ସାଧାରଣଜ୍ଞାନ ପରୀକ୍ଷାର ଉତ୍ତର

୧ । ୧୯୮୧, କେରଳ, ୨ । ହୀରାବେନ୍ ମୋଦି, ୩ । ମେଧା ପାଟେକର, ୪ । ପ୍ରତିଭା ରାୟ, ୫ । କ୍ରିଷ୍ଣା, ୬ । ବାଲେଶ୍ୱର ୭ । ରୁକିୟା(Ruqaiya) ସୁଲ୍ତାନ୍ ବେଗମ୍, ୮ । କୃଷିକ୍ଷେତ୍ରରେ (Agriculture)



## ଧଡ଼ିଆ

ଇନ୍ଦିରା ପ୍ରିୟଦର୍ଶିନୀ ତ୍ରିପାଠୀ

ଆମରି ଗାଆଁର ଧଡ଼ିଆ
କଥା କହେ ଭାରି ବଡ଼ିଆ
ମାଛ ଧରିବାକୁ ଯାଇଥିଲା ଦିନେ
ଘର ପାଖ ଟିକି ଗଡ଼ିଆ ।

ପାଣି ଭିତରକୁ ପଶିଲା
ଜାଲରେ ଧଣ୍ଡଟେ ଧଇଲା
ବଡ଼ ମାଛଟିଏ ପାଇଅଛି ଭାବି
ବହେ ମନେ ମନେ ହସିଲା ।

ପାଣି ଉପରକୁ ଉଠିଲା
ହାତରେ ଧଣ୍ଡକୁ ଦେଖିଲା
ଜିଭ ଲହଲହ କରୁଥିବା ଦେଖି
ପିଳେହି ତା' ପାଣି ଫାଟିଲା ।

ଡରେ ଫିଙ୍ଗିଦେଲା ଧଣ୍ଡକୁ
ଧାଇଁଗଲା ଗାଁ ଦାଣ୍ଡକୁ
ଗାଆଁ ଲୋକେ ହସି ହସି ଗଡ଼ିଗଲେ
ଶୁଣି ସାରି ତା'ର କାଣ୍ଡକୁ ।

*ଭାରତୀ କୁଟୀର, ଢୁଙ୍ଗୁରିପାଲି, ସୁବର୍ଣ୍ଣପୁର* **

# ବାଘ
# ଓ
# ପୋଷା କୁକୁର

ଶାନ୍ତି ସାମଲ

ବାଘଟିଏ ବୁଢ଼ା ହୋଇଯାଇଥାଏ । ବୁଢ଼ା ହୋଇ ଯାଇଥିବାରୁ କୌଣସି ଜୀବଜନ୍ତୁଙ୍କୁ ସେ ମାରି ପାରୁ ନ ଥାଏ । ଜୀବଜନ୍ତୁ ନ ମାରିପାରିବାରୁ ତାକୁ କୌଣସି ଖାଦ୍ୟ ଜୁଟୁ ନ ଥାଏ । ଖାଦ୍ୟ ନ ଖାଇ ନ ଖାଇ ସେ ଦୁର୍ବଳ ହୋଇପଡ଼ିଥାଏ ।

ଦିନେ ଗୋଟିଏ ହୃଷ୍ଟପୁଷ୍ଟ ପୋଷାକୁକୁର ସାଙ୍ଗରେ ତାର ଦେଖାହେଲା । ବାଘଟି କୁକୁରକୁ ପଚାରିଲା, "ଭାଇ ଯଦି କିଛି ମନେ ନ କରିବୁ, ମୁଁ ଗୋଟିଏ କଥା ତୋତେ ପଚାରିବି ।" କୁକୁରଟି ଦେଖିଲା ବାଘଟି ଏତେ ଦୁର୍ବଳ ହୋଇଛି ଯେ ତାର ଚାଲିବାର ଶକ୍ତି ନାହିଁ । ସେ ଅତି ଦୟାପରବଶ ହୋଇ ବାଘକୁ କହିଲା, "ହଁ ଭାଇ, କ'ଣ ପଚାରିବ ମୋତେ ପଚାର ।" ବାଘ କହିଲା, "କୁକୁରଭାଇ ତୁ କେମିତି ଖାଦ୍ୟ ଯୋଗାଡ଼ କରୁଛୁ ମୋତେ ଟିକିଏ କହ । ମୁଁ ବି ସେମିତି କିଛି କରିବାକୁ ଚେଷ୍ଟା କରିବି ।"



କୁକୁର କହିଲା, "ମୁଁ ଜଣେ ମାଲିକଙ୍କ ଘରେ ଥାଏ । ସେ ମୋତେ ବାନ୍ଧି କରି ରଖିଥାଆନ୍ତି ଦିନରେ । ସକାଳେ ରୁଟି, କ୍ଷୀର ଦିଅନ୍ତି; ଖରାବେଳେ ମାଂସ, ଭାତ ଦିଅନ୍ତି ଓ ରାତିରେ କ୍ଷୀର, ଭାତ ଦିଅନ୍ତି । ମାଲିକ ମୋତେ ବହୁତ ଭଲପାଆନ୍ତି । ସେ ନିଜେ ମୋତେ ବାସ୍ନା ସାବୁନରେ ଗାଧୋଇ ଦିଅନ୍ତି । ସୁନ୍ଦର ଗନ୍ଧ ଥିବା ପାଉଡର ଲଗାଇ ଦିଅନ୍ତି । ମୋ ପାଇଁ ଗଦି, ବିଛଣା ରଖିଥାଆନ୍ତି । ମୁଁ ସେଥିରେ ଶୁଏ । କେବଳ ଏକ, ଦୁଇ କରିବା ସମୟରେ ସେ ମୋତେ ବାହାରକୁ ପଠାନ୍ତି ।

ମୁଁ ମୋ ମାଲିକଙ୍କ ପାଖରେ ବହୁତ ଖୁସିରେ ଅଛି । ତମେ ଯଦି ଚାହିଁବ, ମୁଁ ମୋ ମାଲିକଙ୍କୁ କହି ତମକୁ ତାଙ୍କ ଘରେ ରଖାଇ ଦେବି । ତମର ଖାଦ୍ୟ ଅନ୍ୱେଷଣର ଚିନ୍ତା ରହିବନି ।" ବାଘଟି ସବୁ ଶୁଣି କହିଲା, "ତୁ ମୋତେ ତୋର ମାଲିକଙ୍କ ପାଖରେ ରଖାଇଦେବାକୁ ଚାହୁଁଛୁ । ତୋର ସାହାଯ୍ୟ କରିବାର ମାନସିକତା ପାଇଁ ଅନେକ ଧନ୍ୟବାଦ । ମୁଁ କିନ୍ତୁ କାହାର ଅଧୀନରେ ରହିପାରିବିନି । ପର ଅଧୀନରେ ରହି ମାଂସ-ଭାତ ଖାଇବାଠାରୁ ସ୍ୱାଧୀନ ଭାବରେ ରହି ଖାଇବାକୁ ନ ପାଇ ମରିଯିବା ବରଂ ମୋର ପସନ୍ଦ ।"

*ଅରୁଣୋଦୟ ନଗର, କଟକ- ୧୨*

# ସ୍ନେହ-ବନ୍ଧନ

ଶ୍ରୀ ଶୁଭକାନ୍ତ ସାହୁ

ଆଜି ପ୍ରସାଦବାବୁଙ୍କ ଘର ଉତ୍ସବମୁଖର । ତାଙ୍କର ଅଲିଅଳୀ କନ୍ୟା ଇନ୍ଦୁମତୀର ଜନ୍ମଦିନ । ଘରଟି ସୁନ୍ଦର ସାଜସଜାରେ ଝଟକି ଉଠୁଛି । ଘରେ ବନ୍ଧୁବାନ୍ଧବଙ୍କ ଭିଡ଼ । ଇନ୍ଦୁମତୀର ସାଙ୍ଗସାଥୀମାନ ମଧ୍ୟ ଆସିଥାନ୍ତି । ମିଠା, ପିଠା, ଖିରି, ଖେଚୁଡ଼ି ଭୁରି ଭୋଜନର ଆୟୋଜନ । ଘରେ ସଭିଏଁ ବେଶ ଆନନ୍ଦିତ ।

ସେଦିନ ଇନ୍ଦୁମତୀ ସକାଳୁ ଉଠି ଗାଧୁଆ ପାଧୁଆ ସାରି ନୂଆ ଜାମା ପିନ୍ଧିଲା । ତା'ମୁହଁରେ ବିଭିନ୍ନ ବିଭିନ୍ନ ରଙ୍ଗର ଟୋପି ଟୋପି ଚିତା କାଟି ଟିକିଏ ସଜେଇ ଦେବାରୁ କୁନି ପରୀଟିଏ ପରୀ ସେ ଭାରି ସୁନ୍ଦର ଦିଶିଲା । ତା' ଆନନ୍ଦ କହିଲେ ନ ସରେ । ଖାଲି ପ୍ରଜାପତି ଭଳି ଖୁସିରେ ଘରସାରା ବୁଲୁଥାଏ । ସାଙ୍ଗରେ ତା'ର ଦୁଇ ଚାରିଜଣ ସାଙ୍ଗ । ନିର୍ଦ୍ଧାରିତ ସମୟରେ ଶଙ୍ଖ ହୁଳହୁଳିର ପଟୁଆର ସହ ବାପାଙ୍କ ସହିତ ମନ୍ଦିରକୁ ଗଲା । ଠାକୁର ଦର୍ଶନ କଲା । ଆଜି ତା'ର ପଞ୍ଚମ ସ୍ୱନକ୍ଷତ୍ର ଦିବସ । ସେଥିପାଇଁ ତା' କୁନି ହାତରେ ଠାକୁରଙ୍କ ପାଖରେ ପାଞ୍ଚୋଟି ଘିଅଦୀପ ଜାଳିଲା । ଠାକୁରଙ୍କୁ ମୁଣ୍ଡିଆ ମାରିଲା । ମନ୍ଦିରରେ ପୂଜା କାମ ସରିବା ପରେ ବାପାଙ୍କ ସହିତ ପଟୁଆରରେ ଘରକୁ ଫେରିଆସିଲା ।

ଇନ୍ଦୁମତୀ ଘରକୁ ଫେରିବା ପରେ ବାପାବୋଉଙ୍କୁ ପ୍ରଣାମ କଲା । ଗୁରୁ ଗୁରୁଜନ ଯେତେ ଉପସ୍ଥିତ ଥିଲେ, ସଭିଙ୍କ ପାଦ ଛୁଇଁ ପ୍ରଣାମ କଲା । ସେତେବେଳେ ସେ ଅନେକ ଉପହାର ପାଇଲା; କିନ୍ତୁ ତା'ର କୋଉଥିରେ ସରାଗ ନାହିଁ । ମନେ ମନେ ସେ ତା' ବଡ଼ଭାଇ ଶୁଭକାନ୍ତକୁ ଖୋଜୁଥିଲା । ସେତେବେଳେ ସେ ଘରେ ନ ଥିଲା । ତାକୁ ନ ପାଇ ବୋଉକୁ ପଚାରିଲା । ବୋଉ କିଛି କହିବା ଆଗରୁ ଶୁଭକାନ୍ତ କୋଉଠି ଥିଲା, ଆସି ସେଠାରେ ପହଞ୍ଚିଗଲା ।

ଶୁଭକାନ୍ତ ଏଇ ବର୍ଷ କଲେଜରେ ପଢୁଛି । କଲେଜରୁ ଫେରିବାବେଳେ ଜଣେ ଲୋକ କେତେଗୁଡ଼ିଏ ଶୁଆ ରାସ୍ତା କଡ଼ରେ ବିକ୍ରି କରୁଥିବା ଦେଖି ବାଛି ବାଛି ଗୋଟିଏ ସୁନ୍ଦରିଆ କୁନିଶୁଆ ଆଉ ଗୋଟିଏ ଛୋଟ ପଞ୍ଜୁରୀ ଗତ କାଲି ନେଇ ଆସିଥିଲା ତା'ର କୁନି ଭଉଣୀର ଜନ୍ମଦିନରେ ଉପହାର ଦେବ ବୋଲି । ଘରକୁ ନ ଆଣି ତା'ର ଜଣେ ସାଙ୍ଗ ଘରେ ରଖିଥିଲା । ସେଇଟିକୁ ଆଣିବାକୁ ଚାଲିଯାଇଥିଲା । ପଞ୍ଜୁରୀଟିକୁ ତା'ପଛପଟେ ଲୁଚେଇ ଧରିଥାଏ । ଭାଇଙ୍କୁ ପ୍ରଣାମ କରି ଉଠିଲାବେଳକୁ ସେ ଇନ୍ଦୁ ହାତରେ ପଞ୍ଜୁରୀଟି ଧରେଇଦେଇ ଟିକିଏ ଗେହ୍ଲା କରିଦେଲା । ସେଇଟିକୁ ଦେଖି ଇନ୍ଦୁ ଖୁସିରେ ନାଚି ଉଠିଲା ।

ପ୍ରତିଦିନ ଇନ୍ଦୁ ଶୁଆଟି ସହିତ ଖେଳେ, ତା'ର ଖାଇବା ପିଇବା ଇତ୍ୟାଦିର ଯତ୍ନ ନିଏ । ତା'କୁ ଖୁବ୍ ଆଦର କରେ । ଧୀରେ ଧୀରେ ଶୁଆଟି ବଡ଼ ହେଲା । ବଡ଼ ପଞ୍ଜୁରୀ ଆସିଲା । ଶୁଆଟି ଏଥର ଇନ୍ଦୁର ଅନୁକରଣ କରି କଥା କହିବା ଆରମ୍ଭ କରେ । ପ୍ରସାଦବାବୁ ଅଫିସ ଯାଆନ୍ତି, ଶୁଭକାନ୍ତ କଲେଜ ଯାଏ, ଇନ୍ଦୁ ସ୍କୁଲକୁ । ଘରେ ଏକା ରହନ୍ତି ଇନ୍ଦୁବୋଉ । ଏଣିକି ସେ ଟିଭି ଦେଖା ଛାଡ଼ି ଶୁଆଟି ସହିତ ସମୟ କାଟନ୍ତି । ତା'କୁ ନୂଆ ନୂଆ କଥା ଶିଖାନ୍ତି । ଛୁଟିଦିନଗୁଡ଼ିକରେ ବା ଅନ୍ୟ ଦିନେ ସମୟ

ପାଇଲେ ପ୍ରସାଦବାବୁ ମଧ୍ୟ କିଛି କିଛି ସମୟ ଶୁଆଟି ପାଖରେ କଟାନ୍ତି । ଶୁଆଟିକୁ ନେଇ ପ୍ରାୟ ସଭିଏଁ ଖୁସି ।

ଏବେ ଶୁଆଟି ସୁନ୍ଦର ଭାବରେ କଥା କହିପାରୁଛି । ନିଜ ମନକଥା କହିପାରୁଛି । ମଣିଷ ଭଳି ଘୋଷା ପାଠ ଶିଖି କହୁ କହୁ ମନ କଥା କହିବା ଶୁଆଟିର ଥିଲା ସ୍ୱତନ୍ତ୍ର ବିଶେଷତ୍ୱ । ଏଥିପାଇଁ ପ୍ରସାଦବାବୁଙ୍କ ମନ କୁଣ୍ଢେମୋଟ ।

ଦିନେ ପ୍ରସାଦବାବୁ ଶୁଆ ସହିତ କିଛି ସମୟ କଟେଇବେ ଭାବି ଶୁଆ ପାଖକୁ ଗଲେ । ଶୁଆ କହିଲା, ''ବାବା! ମୋତେ ମୋ ବାବାବୋଉ, ମୋ ଘର, ସାଙ୍ଗସାଥୀ ସବୁ କିଛି ମନେପଡୁଛି । ସେମାନଙ୍କୁ ଦେଖିବା ପାଇଁ ମୋ ପ୍ରାଣ କାନ୍ଦି ଉଠୁଛି । ଦୟା କରି ମୋତେ ଟିକିଏ ମୁକ୍ତ କରିଦେଲେ ସେମାନଙ୍କ ପାଖକୁ ଚାଲିଯାଆନ୍ତି ।'' ପ୍ରସାଦବାବୁ ସଫା ସଫା ମନା କରିଦେଲେ । ବିଚାରା ଶୁଆଟି ମନ ଦୁଃଖରେ ରହିଲା ।

ସେଦିନ ସନ୍ଧ୍ୟାରେ ଶୁଆଟି ମନ ମାରି ବସିଥିବା ଦେଖି ଇନ୍ଦୁ ଶୁଆ ପାଖକୁ ଗଲା । ଶୁଆଟି ତା' ବାବାବୋଉଙ୍କ କଥା ମନେପଡ଼ିବା କଥା କହି ତାଙ୍କୁ ଦେଖି ଯିବା ପାଇଁ ଇଚ୍ଛା ପ୍ରକାଶ କରି ତାକୁ ମୁକ୍ତ କରିଦେବାକୁ ନେହୁରା ହେଲା । ଇନ୍ଦୁ ପ୍ରଥମେ ପ୍ରଥମେ ସ୍କୁଲକୁ ଗଲାବେଳେ ତା'ର କେମିତି ବାବାବୋଉଙ୍କ କଥା ମନେପଡୁଥିଲା, ଆଉ ସେଥିପାଇଁ ସେ କାନ୍ଦି ପକାଉଥିଲା । ସେ କଥା ଏବେ ତା'ର ମନେପଡ଼ିଗଲା । ଆହା, ବିଚାରା ବହୁଦିନ ହେଲା ସେ ତା'ବାପାମା'ଙ୍କୁ ଦେଖିନି । ଏଣୁ ତାକୁ ଭାରି ବିକଳ ଲାଗିଲା । ହେଲେ ଏଭଳି ଗୋଟେ ଅସାଧାରଣ ଶୁଆକୁ ଛାଡ଼ି ଦେବାକୁ କାହା ମନ ଡାକିବ ଯେ ! ତଥାପି ଇନ୍ଦୁ ଶୁଆଟିର ଦୁଃଖକୁ ସହି ପାରିଲାନି । କହିଲା, ''ସାଙ୍ଗ, ତୋତେ ନିଶ୍ଚେ ଛାଡ଼ିଦେବି । ଆଜି ତ ସନ୍ଧ୍ୟା ହେଲାଣି । ତା'ଛଡ଼ା କାଲି ମୋର ଜନ୍ମଦିନ । ମନ୍ଦିରରୁ ଫେରିଲେ ନିଶ୍ଚେ ଛାଡ଼ିଦେବି । ମାତ୍ର ସାଙ୍ଗ ତୋତେ ଟିକିଏ ନ ଦେଖିଲେ ମୁଁ ପାଗଳୀ ହୋଇଯିବି ।'' ଶୁଆଟି ଇନ୍ଦୁ କଥାରେ କୃତକୃତ୍ୟ ହୋଇ କହିଲା, ''ନାଇଁ ସାଙ୍ଗ, ଜମା ଦୁଃଖ କରନା, ସତରେ ତମକୁ ଛାଡ଼ି ମୁଁ କ'ଣ ବଞ୍ଚିପାରିବି? ତୁମେ ତ ମୋ ପାଖକୁ ଆସି ପାରିବନି, ମାତ୍ର ମୁଁ ମଝିରେ ମଝିରେ ନିଶ୍ଚେ ତୁମ ପାଖକୁ ଆସିବି ।''

ସକାଳ ହେଲା । ଆଜି ଇନ୍ଦୁର ଦଶମ ଜନ୍ମତିଥି । ଉତ୍ସବ କାର୍ଯ୍ୟ ବଢ଼େଇବାରେ ସମସ୍ତେ ବ୍ୟସ୍ତ । ଠିକଣା ସମୟରେ ଇନ୍ଦୁ ମନ୍ଦିର ଯାଇ ଠାକୁର ଦର୍ଶନ ସାରି ବାପା ଆଉ ବନ୍ଧୁବାନ୍ଧବ ପ୍ରିୟପରିଜନଙ୍କ ମେଳରେ



ଫେରିଆସିଲା । ସମସ୍ତେ ନିଜ ନିଜ କାମରେ ବ୍ୟସ୍ତ ରହିଲେ। କିଏ ରୋଷେଇ କଥା ତ କିଏ ଅତିଥିମାନଙ୍କ ଚର୍ଚ୍ଚା । ଆଉ କେତେକ ପରସ୍ପର ମଧ୍ୟରେ କଥାବାର୍ତ୍ତାରେ ମଜିଗଲେ। ଏତିକିବେଳେ ଇନ୍ଦୁ ଶୁଆଟିକୁ ପଞ୍ଜୁରୀ ମଧ୍ୟରୁ ମୁକ୍ତ କରିଦେଲା । ଶୁଆଟି ମନ ଆନନ୍ଦରେ ଉଡ଼ିଗଲା। ପ୍ରସାଦବାବୁ ଇନ୍ଦୁ ଉପରେ ମନେ ମନେ ବିରକ୍ତ ହେଲେ ସିନା ଜନ୍ମଦିନ ହେତୁ କିଛି କହିଲେ ନାହିଁ।

କିଛି ଦିନ ପରେ ଦିନେ ପ୍ରସାଦବାବୁ ଦେଖିଲେ ଶୁଆଟି ଆସି ଝରକାବାଡ଼ରେ ବସିଛି। ଇନ୍ଦୁ ତା'ସହିତ ଗପୁଛି । ସେ ଶୁଆଟିକୁ ଧରିନେବାକୁ ଚେଷ୍ଟା କଲେ । ଏହା ଜାଣିପାରି ଶୁଆ କହିଲା, ''ବାବା ! ମୋତେ ଧରି ନେଇ ଆଉ ପଞ୍ଜୁରୀରେ ବନ୍ଦୀ କରିବା ଆବଶ୍ୟକ ନାହିଁ। ମୁଁ ଯେ ଆପଣଙ୍କ ଝିଅର ସ୍ନେହବନ୍ଧନରେ ବନ୍ଦୀ । ସେଥିରୁ ମୁକୁଳିବା ମୋର ଚାରା କାହିଁ? ଦିନେ ଦୁଇଦିନ ଭିତରେ ଥରେ ଆସି ମୋ ସାଙ୍ଗକୁ ଦେଖି ନ ଗଲେ ମୁଁ ଅସ୍ଥିର ହୋଇଉଠେ । ଆଉ ମୋତେ ବନ୍ଦୀ କରିବା କି ଆବଶ୍ୟକ?'' ଇନ୍ଦୁ ମଧ୍ୟ ତା'ବାବାଙ୍କୁ ବାରଣ କଲା।

ସ୍ନେହର ବନ୍ଧନ କେତେ ଶକ୍ତିଶାଳୀ ସତେ ! ପିଞ୍ଜରା ଭିତରୁ ବାହାରି ମୁକ୍ତିର ସ୍ୱାଦ ପାଇଥିବା ପକ୍ଷୀକୁ ଟାଣି ଆଣି ପାରୁଛି ନିଜ ପାଖକୁ। ପ୍ରସାଦବାବୁ ଇନ୍ଦୁ ଏବଂ ଶୁଆଟିର ସ୍ନେହବନ୍ଧନକୁ ପରଖୁଥିଲେ , ଶୁଆଟି ସେଠାରୁ ଉଡ଼ିଗଲା ।

*ଶିଳାପଦ୍ମ, ବାଲାଜୀପେଣ୍ଠ ସାହି, ବ୍ରହ୍ମପୁର- ୭୬୦୦୦୨, ଗଞ୍ଜାମ*

---




୭ । ୮- ପ୍ରଖ୍ୟାତ କାର୍ଟୁନିଷ୍ଟ ପ୍ରାଣ କୁମାର ଶର୍ମାଙ୍କର ୭୫ ବର୍ଷରେ ପରଲୋକ ।

୧୯ ।୮- ବିଶିଷ୍ଟ ଗାନ୍ଧିବାଦୀ ନେତା, ପୂର୍ବତନ ସାଂସଦ ତଥା ଲୋକସେବକ ମଣ୍ଡଳର ଆଜୀବନ ସଦସ୍ୟ ପ୍ରସନ୍ନ ବଦନ ମେହେଟ୍ଟାଙ୍କର ୯୧ ବର୍ଷରେ ପରଲୋକ ।

୨୦।୮- ବିଶ୍ୱର ବିଶିଷ୍ଟ ଯୋଗଗୁରୁ ପଦ୍ମବିଭୂଷଣ ବେଲୁର କ୍ରିଷ୍ଣମାଚାର ସୁନ୍ଦରରାଜ ଆୟେଙ୍ଗରଙ୍କର ୯୬ ବର୍ଷରେ ପରଲୋକ ।

# ଶବ୍ଦଧନ୍ଦା-ସେପ୍ଟେମ୍ବର, ୨୦୧୪

ଶ୍ରୀ ଧରଣୀଧର ବେହେରା

୧। କାଗଜରେ ବା କାର୍ଡରେ ଘର କାଟି ଉତ୍ତର ଲେଖନ୍ତୁ।
୨। ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ।
୩। ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ।
୪। ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
୫। ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ।
୬। ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨।୯।୨୦୧୪
୭। ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| ୧ | | ୨ | | ୩ | ୪ | ୫ |
|---|---|---|---|---|---|---|
| ୬ | | | ★ | | ୭ | |
| | ★ | ୮ | | | | |
| | ★ | | ୯ | | ୧୦ | |
| ୧୧ | ୧୨ | ୧୩ | | ★ | ୧୪ | ୧୫ |
| ★ | ୧୬ | | | ୧୭ | | |
| ★ | ୧୮ | | | ★ | | |

## ସୂଚନା

**ବାମରୁ ଡାହାଣ--** ୧ । ପୂର୍ଣ୍ଣମୀ (୪), ୩ । ପିତା (୩), ୬ । ଏକ ବାଦ୍ୟଯନ୍ତ୍ର (୩), ୭ । ସ୍ତ୍ରୀ/ପତ୍ନୀ (୨), ୮ । ସତ୍ୟର ଶପଥ (୩), ୯ । ସାଧବବୋହୂ ପୋକ (୩), ୧୧ । ରତ୍ନବିଶେଷ (୩), ୧୪ । ହାତୀ (୨), ୧୬ । ରୋଗବିଶେଷ (୨), ୧୭ । ଏକ ପ୍ରକାର ମସଲା (୩), ୧୮ । ଆପଣାର (୩) ।

**ଉପରୁ ତଳ--** ୨ । ଦୋକାନବିଶେଷ (୪), ୩ । ଯମରାଜ (୪), ୪ । ଗ୍ରୀଷ୍ମକାଳ (୩), ୫। ସୁନାରୁପାର କାରୁକାର୍ଯ୍ୟ (୪), ୬ । ପିତାଙ୍କ ମାତା (୪), ୯ । ଭର୍ତ୍ସନା (୪), ୧୦ । ଦୁର୍ଗା (୪), ୧୨। ରାତ୍ରୀ (୩), ୧୩ । ଧାର (୩), ୧୫ । ଗତିଶୀଳ/ଚଳନ୍ତି (୩) ।

*ମୋଗଲପାଟଣା, ରାହାଣିଆଁ, କଟକ-୭୫୪୨୦୪*

---

**ଅଗଷ୍ଟ ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧ । ପଟି, ୩ । ରମଠ, ୬ । ରାକା, ୭ । ଦିତିଜ, ୮ । ଆତପ, ୧୧ । ହାରିକଣ୍ଟ, ୧୩ । ପର, ୧୫ । ସ୍ୱିକାର, ୧୬ । ଶାକାହାର, ୧୮ । ନୀଳାମ୍ବରୀ, ୧୯ । ବଳ ।

**ଉପରୁ ତଳ--** ୧ । ପରାତ, ୨ । ଟିକାୟତ, ୩ । ରଜତ, ୫ । ଠକ, ୮ । ଆରିଷା, ୯ । ତପସ୍ୱିନୀ, ୧୨ । କର୍ମକାଣ୍ଡ, ୧୪ । ତରଳ, ୧୬ । ଶାରୀ, ୧୭ । ହାବ ।

---

ସମ୍ପୂର୍ଣ୍ଣ ଠିକ୍ ଉତ୍ତରଦାତାଙ୍କ ନାମ-- **କୁମାର ଅଭିଜିତ ନାୟକ** ଓ **ସୌମ୍ୟରଞ୍ଜନ ନାୟକ,** ରମ୍ଭେଇ, ବାଟିଯୋଡ଼ା, ଯାଜପୁର; **ରାଜକିଶୋର ସାହୁ,** ଓଡ଼ଗାଁ, ନୟାଗଡ଼ ।

ବିଳମ୍ବରେ ଆସିଥିବା ଜୁଲାଇ ମାସର ଉତ୍ତର--**ଧରଣୀଧର ବେହେରା**

---




## ଓଡ଼ିଶା ଖବର

୨୧ । ୭- ଲଗାଣ ବର୍ଷାରେ ୪ଟି ଜିଲ୍ଲାରେ ବନ୍ୟା ପରିସ୍ଥିତି ଏବଂ ବୈତରଣୀ ନଦୀର ବନ୍ୟାରେ ଯାଜପୁର ଜିଲ୍ଲା କ୍ଷତିଗ୍ରସ୍ତ ।

୨୫ । ୭- ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ପ୍ରଥିତଯଶା ସାହିତ୍ୟିକ ଡକ୍ଟର ଧନେଶ୍ୱର ମହାପାତ୍ର ଏବଂ ଡ. ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କୁ ଅତିବଡ଼ୀ ପୁରସ୍କାର ପ୍ରଦାନ ।

୨୮ । ୭- ପଞ୍ଚଦଶ ବିଧାନ ସଭାର ପ୍ରଥମ ତଥା ପୂର୍ଣ୍ଣାଙ୍ଗ ବଜେଟ୍ ଅଧିବେଶନ ଶେଷରେ ବ୍ୟୟ ମଂଜୁରୀ ବିଲ୍ ଗୃହୀତ ।

୩୧ । ୭- ଆଇ.ଏ.ଏସ୍. ଅଧିକାରୀ ଗୋକୁଳ ଚନ୍ଦ୍ର ପତି ରାଜ୍ୟ ନୂତନ ୪୧ତମ ମୁଖ୍ୟ ଶାସନ ସଚିବ ନିଯୁକ୍ତ ।

୨ । ୮- ଇଚ୍ଛାଧୀନ କୋଟାରେ ପ୍ରଭାବଶାଳୀ ବ୍ୟକ୍ତିଙ୍କୁ ଏକାଧିକ ପ୍ଲଟ୍ ଦିଆଯିବାର ଅନୁସଂଧାନ ପାଇଁ ଟାସ୍କ୍ ଫୋର୍ସ ଗଠିତ ।

୩ ।୮- ସମ୍ବଲପୁରରେ ୮ଘଣ୍ଟାର ଅବିରତ ବର୍ଷାରେ ୭୦ହଜାର ଲୋକ ପ୍ରଭାବିତ । ୨୨ଟି ରିଲିଫ୍ କ୍ୟାମ୍ପ୍ ଖୋଲାଯାଇ ୫୦୦୦ ବିପନ୍ନଙ୍କୁ ଆଶ୍ରୟ ।

## ଭାରତ ଖବର

୨୫ । ୭- ବିଜେପିର ବରିଷ୍ଠ ନେତା ତଥା ରାଜ୍ୟସଭା ସାଂସଦ କପ୍ତାନ୍ ସିଂହ ସୋଲାଙ୍କି ହରିୟାନାର ରାଜ୍ୟପାଳ ନିଯୁକ୍ତ ।

୩୧ । ୭-- ମହାରାଷ୍ଟ୍ରର ପୁଣେ ଜିଲ୍ଲାରେ ପ୍ରବଳ ବର୍ଷା ଯୋଗୁଁ ୧୮ଜଣଙ୍କର ମୃତ୍ୟୁ ଓ ୨୦୦ରୁ ଅଧିକ ମାଟିତଳେ ରହିଥିବାର ଆଶଙ୍କା । ଉଦ୍ଧାର କାର୍ଯ୍ୟ ଆରମ୍ଭ ।

--ପୂର୍ବତନ ପୋଲିସ୍ ମହାନିର୍ଦ୍ଦେଶକ ପ୍ରକାଶ ମିଶ୍ର କେନ୍ଦ୍ର ଗୃହ ମନ୍ତ୍ରଣାଳୟର ଆଭ୍ୟନ୍ତରୀଣ ସୁରକ୍ଷା ବିଭାଗର ସ୍ୱତନ୍ତ୍ର ସଚିବ ନିଯୁକ୍ତ ।

୧ । ୮- ଦେଶର ୨୬ତମ ସ୍ଥଳ ସେନାଧ୍ୟକ୍ଷ ଭାବେ ଜେନେରାଲ ଦଲବୀର ସିଂହ ସୋହାଗଙ୍କର ଦାୟିତ୍ୱ ଗ୍ରହଣ ।

୫ । ୮- ଗ୍ଲାସ୍‌ଗୋଠାରେ ଚାଲିଥିବା ରାଜ୍ୟଗୋଷ୍ଠୀ କ୍ରୀଡ଼ାରେ ଭାରତ ୬୪ଟି (୧୫ଟି ସ୍ୱର୍ଣ୍ଣ, ୩୦ଟି ରୋପ୍ୟ ଓ ୧୯ଟି ବ୍ରୋଞ୍ଜ୍) ପଦକ ଜିତି ୫ମ ସ୍ଥାନରେ ରହିଛି ।

୧୨ । ୮- ଅର୍ଥମନ୍ତ୍ରୀ ଅରୁଣ ଜେଟ୍‌ଲି, କଂଗ୍ରେସ ନେତା କରନ୍ ସିଂହ ଓ ଜେଡିୟୁ ଅଧ୍ୟକ୍ଷ ଶରତ ଯାଦବଙ୍କୁ ଶ୍ରେଷ୍ଠ ସାଂସଦ ସମ୍ମାନ ପ୍ରଦାନ ।

୧୩ । ୮- ସୁପ୍ରିମ୍ କୋର୍ଟ ଓ ହାଇକୋର୍ଟ ବିଚାରପତିଙ୍କ ନିଯୁକ୍ତି ପାଇଁ ଉଦ୍ଦିଷ୍ଟ କଲେଜିୟମ ବ୍ୟବସ୍ଥାର ଉଚ୍ଛେଦ ନିମନ୍ତେ ନ୍ୟାୟିକ ନିଯୁକ୍ତି ଆୟୋଗ-ବିଧେୟକ-୨୦୧୪ ଓ ସାମ୍ବିଧାନିକ ସଂଶୋଧନ ବିଲ୍ ଲୋକସଭାରେ ଗୃହୀତ ।

-- ଏ.ଆର୍.ଡି.ଏମ୍.କେ. ସାସଂଦ ଏମ୍ ଅମ୍ବି ଦୁରାଇ ସର୍ବ ସମ୍ମତି କ୍ରମେ ଲୋକସଭାର ଉପବାଚସ୍ପତି ନିର୍ବାଚିତ ।

୧୬ । ୮- ସ୍ୱଦେଶୀ ଜ୍ଞାନକୌଶଳରେ ନିର୍ମିତ ଦେଶର ସର୍ବବୃହତ୍ ଯୁଦ୍ଧ ଜାହାଜ ଆଇ.ଏନ୍.ଏସ୍. କଲକତା ନୌସେନାରେ ସାମିଲ ।

୧୭ । ୮- ଉତ୍ତରାଖଣ୍ଡ, ୟୁପି ଓ ବିହାର ବନ୍ୟାରେ ମୃତ୍ୟୁସଂଖ୍ୟା ୮୦ ଓ ଶତାଧିକ ନିଖୋଜ ।

-- ଇଂଲଣ୍ଡ ସହିତ ଖେଳାଯାଇଥିବା ପାଞ୍ଚଟିକିଆ ଟେଷ୍ଟ ସିରିଜ୍‌ରେ ଭାରତର ୩-୧ରେ ଇଂଲଣ୍ଡଠାରୁ ଲଜ୍ଜାଜନକ ପରାଜୟ ।

୧୮ । ୮- ଆସନ୍ତା ୨୫ ତାରିଖରେ ଇସଲାମାବାଦରେ ହେବାକୁ ଥିବା ଭାରତ-ପାକିସ୍ତାନ ବୈଦେଶିକ ସଚିବସ୍ତରୀୟ ଆଲୋଚନା ବାତିଲ ।

୨୧ ।୮- ୧୪ ବର୍ଷଧରି ଅନଶନ ଚଳାଇଥିବା ମଣିପୁରର ଲୌହମାନବୀ ଇରମ ଶର୍ମିଳା ଜେଲ୍‌ରୁ ମୁକ୍ତ ।

## ବିଦେଶ ଖବର

୩ । ୮- ଦକ୍ଷିଣ ପଶ୍ଚିମ ଚୀନ୍‌ର ୟୁନାନ୍ ପ୍ରଦେଶରେ ଏକ ଶକ୍ତିଶାଳୀ ଭୂକମ୍ପ ଯୋଗୁ ୧୮୦ ମୃତ ଓ ୧୫୦୦ ଆହତ ।

୪ । ୮- ଲିବିୟାରେ ମଧ୍ୟବର୍ତ୍ତୀକାଳୀନ ସରକାରଙ୍କୁ ବିରୋଧ କରି ବିଦ୍ରୋହୀଙ୍କ ସଂଘର୍ଷରେ ୨୨୦ରୁ ଅଧିକ ଲୋକଙ୍କର ମୃତ୍ୟୁ ।

୫ । ୮- ଦୀର୍ଘ ୧୨ ଦିନ ଧରି ସ୍କଟ୍‌ଲ୍ୟାଣ୍ଡର ଗ୍ଲାସ୍‌ଗୋଠାରେ ଚାଲିଥିବା ବିଂଶତମ ରାଜ୍ୟଗୋଷ୍ଠୀ କ୍ରୀଡ଼ା ଉଦ୍‌ଯାପିତ ।

୭ । ୮- ୧୯୭୫ରୁ ୧୯୭୬ ମଧ୍ୟରେ କାମ୍ବୋଡ଼ିଆରେ ଘଟିଥିବା ଅନାହାର, ଶୋଷଣ ଓ ପ୍ରଜାପୀଡ଼ନ ଲାଗି ୨୦ ଲକ୍ଷ ଲୋକଙ୍କ ପ୍ରାଣହାନିରେ ଦୋଷୀ ସାବ୍ୟସ୍ତ ଦୁଇ ଶୀର୍ଷ ନେତା-- ଖମେର୍ ରୁଜର ଅଧ୍ୟକ୍ଷ ସାମଫାନ୍ ଓ କାମ୍ପୁଚିଆର ମୁଖ୍ୟ ବିଚାରକ ନୂଅନ ଚିୟାଙ୍କୁ ମିଳିତ ଜାତିସଂଘ ସମର୍ଥିତ ଅଦାଲତରେ ଆଜୀବନ କାରାଦଣ୍ଡ ଆଦେଶ ପ୍ରଦାନ ।

୧୦ । ୮- ଇରାନ୍‌ର ଏକ ଯାତ୍ରୀବାହୀ ବିମାନ ତେହେରାନ୍ ଠାରେ ଦୁର୍ଘଟଣାଗ୍ରସ୍ତ ହେବାରୁ ୪୦ ଜଣ ଯାତ୍ରୀ ଓ ୮ଜଣ କର୍ମଚାରୀଙ୍କର ମୃତ୍ୟୁ । ।

-- ଆତଙ୍କବାଦୀମାନଙ୍କ ଦ୍ୱାରା ଇରାକ୍‌ରେ ସଂଖ୍ୟାଲଘୁ ୟାଜିଦିଦ ସମ୍ପ୍ରଦାୟର ୫୦୦ ଲୋକଙ୍କୁ ହତ୍ୟା ଏବଂ ୩୦୦ରୁ ଅଧିକ ୟାଜିଦି ମହିଳା ଅପହୃତ ।

୧୧ । ୮- ଏକ ଦଶନ୍ଧିର ଯାତ୍ରା ପରେ ୟୁରୋପୀୟ ମହାକାଶ ଯାନ ରୋସେଟ୍ଟା ଧୂମକେତୁ ୬୭ପି-ଚୁରୟୁମୋଭ-ଗେରାସିମେନ୍‌କୋ ନିକଟରେ ପହଞ୍ଚିଲା ।

---

# ପୁସ୍ତକ ପରିଚୟ

**ପଢୁଆଁ ହୋଇବ ବିନି**-- ଲେଖକ-**ଶ୍ରୀ ଘନଶ୍ୟାମ ବୋଇତେଇ,** ପାଞ୍ଚଜନ୍ୟ ନିଳୟ, ଜନାର୍ଦ୍ଦନପୁର, ପାଟଣା, ପୋଷ୍ଟ- ରାମଚନ୍ଦ୍ରପୁର, କେନ୍ଦୁଝର- ୭୫୮୦୬୧, ମୂଲ୍ୟ- ୨୦ ଟଙ୍କା ମାତ୍ର ।

ପ୍ରକୃତିର ଝାଡୁଦାର, ଫୁଲ ପରି ହୋଇବା, ଗଛ ପରି ମତେ କର, ଏ ଦେଶ ମାଟି ତୁମ ଲାଗି, ଆଇଁଷଖିଆ ଗଛ, ମହୁଲ ଗଛ, ଲଣ୍ଡା ପାହାଡ଼ ଇତ୍ୟାଦି ୩୦ଟି ଛୋଟ କବିତା ଏହି ଡିମେଇ ୧/୮ ଆକାରର ଶିଶୁ-କବିତା ପୁସ୍ତକରେ ରହିଛି । ରଂଗିନ୍ ପ୍ରଚ୍ଛଦଟିରେ ଛୋଟ ଝିଅଟି ଟୋପି ପିନ୍ଧି ବସିବାର ଦୃଶ୍ୟ ଆକର୍ଷଣୀୟ । ଭିତରେ କିଛି କିଛି ଚିତ୍ର ସ୍ଥାନିତ ହୋଇଛି । ପିଲାମାନଙ୍କୁ ପଢ଼ିବାକୁ ଭଲ ଲାଗିବ ବୋଲି ଆଶା ।

**ମୁଠାଏ କବିତା ତୋଡ଼ାଏ ଫୁଲ**-- ଲେଖିକା-**ଡ. ବିଦ୍ୟୁତପ୍ରଭା ଗନ୍ତାୟତ,** ପୂର୍ବରାଗ ପ୍ରକାଶନୀ, ୭-ଏ, କ୍ଷେସନ୍ ସ୍କୋୟାର, ୟୁନିଟ୍-୩, ଭୁବନେଶ୍ୱର-୧ । ମୂଲ୍ୟ- ୫୦ ଟଙ୍କା ମାତ୍ର ।

ଚବିଶଟି ଶିଶୁ-କିଶୋର କବିତା ଏହି କ୍ରାଉନ୍ ୧/୪ ଆକାରର ପୁସ୍ତକଟିରେ ସନ୍ନିବେଶିତ । ଆସ ବୁଲିଯିବା ନନ୍ଦନ କାନନ, ଘରଚଟିଆ, ଚେମେଣି ଲୋ ଚେମେଣି, କଇଁର ଖରା ଛୁଟି, ଦିନେ ବର୍ଷାରେ ତପୁ, ଓଜୋନ୍ ସ୍ତର- ଆମ ସୁରକ୍ଷା ସ୍ତର ଇତ୍ୟାଦି ସମସ୍ତ କବିତା ଶିକ୍ଷଣୀୟ ଓ ପିଲାଙ୍କ ମନଲାଖି ହୋଇଛି । ପ୍ରତ୍ୟେକ କବିତାରେ ସୁଦୃଶ୍ୟ ଚିତ୍ର ରହିଛି । ରଂଗିନ୍ ପ୍ରଚ୍ଛଦଟିରେ ଫୁଲତୋଡ଼ା ସହିତ ଝିଅଟିର ଚିତ୍ର ବେଶ୍ ମନଲୋଭା ପୁସ୍ତକଟି ଆଦୃତ ହେବାର ଆଶା ଓ ବିଶ୍ୱାସ ।

**ଲାଲ୍ ଟୁକୁଟୁକୁ ସାଧବ ବୋହୂ**-- ଲେଖକ-**ଶ୍ରୀ ସୁଶାନ୍ତ କୁମାର ନନ୍ଦ,** ମାରଡ଼ା, ଗୋପୀନାଥପୁର, କେନ୍ଦୁପାଟଣା, ସାଲେପୁର, କଟକ- ୭୫୪୨୦୩ । ମୂଲ୍ୟ- ୪୦ ଟଙ୍କା ମାତ୍ର ।

ଲେଖକଙ୍କର ଏହି ଶିଶୁ-କିଶୋର କବିତା ସଂକଳନଟି ଡିମେଇ ଆକାରର । ଏଥିରେ ୨୫ଟି ଛୋଟବଡ଼ କବିତା ରହିଛି । କର ପ୍ରଣିପାତ ସେହି ନାମକୁ, ପୁଷି ମାଉସୀ ବାହା ହେଉଛି, ଅଜାଙ୍କ ମାଛ ଖିଆ, ନୂଆ ମନ୍ତିରୀ, ଯଶ କୀର୍ତ୍ତି ରଖିଯାଅ ଇତ୍ୟାଦି ସମସ୍ତ କବିତାରେ ଏକରୁ ଅଧିକ ଚିତ୍ର ଶିଶୁମାନଙ୍କ ମନକୁ ଆକର୍ଷିତ କରିବ ନିଶ୍ଚୟ । ପ୍ରଚ୍ଛଦଟି ରଂଗିନ୍ ଓ ଜୀବଜନ୍ତୁଙ୍କର ଚିତ୍ର ପିଲାଙ୍କୁ ଆନନ୍ଦ ଦେବ । ପୁସ୍ତକଟିର ପ୍ରଚାର ଓ ପ୍ରସାର କାମନା କରୁ ।

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597